ଏଥିରେ ଅଛି

# ବିଭିନ୍ନ ବାର୍ଣ୍ଣିକ ଛନ୍ଦରେ:-

## ପ୍ରକାରେ ପ୍ରକାରେ 102

ଗିରିତ୍ରେ ଅରଣ୍ୟେ ସୁନାବ୍ୟା ଶୁଭାର୍ଣ୍ଣେ
ସୁଗନ୍ଧା ପ୍ରକୀର୍ଣ୍ଣା ନିମିତ୍ତେ ସହାନ୍ୟେ
ପୟୋବାହ-ବଜ୍ରେ ପ୍ରହର୍ତ୍ତା ତୁଷାରେ
ତୁ ଏକା ପ୍ରଦୃଶ୍ୟ ପ୍ରକାରେ ପ୍ରକାରେ । ୧

ସମୀରେ ହୁତାଶେ ଛଟାଭା ପ୍ରକାଶେ
ପ୍ରବର୍ଷାର ନୀରେ ତମିସ୍ରା ବିପାଶେ
ଖଗଙ୍ଗେ ଖଚିତ୍ରେ ନିଶାନାଥମିତ୍ରେ
ତୁ ଏକା ପ୍ରଦୃଶ୍ୟ ପ୍ରକାରେ ପ୍ରକାରେ ।୨

ସୁପୁଷ୍ପେ ସୁହାସ୍ୟେ କଳାଳାପ ପାନେ
ପତତ୍ରୀ ବିବୃତ୍ତେ ସୁଦାମା ବିତାନେ
ପ୍ରମୁଗ୍ଧା ଉଷାରେ ସୁଘୋରା ନିଶାରେ
ତୁ ଏକା ପ୍ରଦୃଶ୍ୟ ପ୍ରକାରେ ପ୍ରକାରେ ।୩

(୧-) ଗିରିତ୍ର= ସମୁଦ୍ର; ସୁନାବ୍ୟା= navigable; ଶୁଭାର୍ଣ୍ଣ= ଶୁଭ ନଦୀ; ସୁଗନ୍ଧା= ତୃଣ ବିଶେଷ; ନିମିତ୍ତ= ପଡିଆ; ସହାନ୍ୟ= ପର୍ବତ; ପୟୋବାହ= ମେଘ; ପ୍ରହର୍ତ୍ତା= ଯୋଦ୍ଧା;
(୨-) ଛଟାଭା= ବିଜୁଳି; ବିପାଶ= ନିୟନ୍ତ୍ରଣ; ଖଗଙ୍ଗା= ମହାକାଶ; ଖଚିତ୍ର= ଗ୍ରହତାରାଦି ସମଷ୍ଟି; ନିଶାନାଥ, ମିତ୍ର= ସୂର୍ଯ୍ୟ, ଚନ୍ଦ୍ର;
(୩-) କଳାଳାପ= ଭ୍ରମର; ପାନ= ଚୁମ୍ବନ; ପତତ୍ରୀ= ପକ୍ଷୀ; ବିବୃତ୍ତ= ଏକ ପ୍ରକାର ଉଡିଣ; ସୁଦାମା ବିତାନ= ମେଘ ଢାଙ୍କି ଦେବା;

ଛନ୍ଦ: ଭୁଜଙ୍ଗପ୍ରୟାତ 122×4 ସୂତ୍ର:
ଚତୁର୍ଭିର୍ଯ୍ୟକାରେ ଭୁଜଙ୍ଗପ୍ରୟାତମ୍
by LKabi 202110030145

## ସଂଗୀତ ଶିକ୍ଷା 101

ସଂଗୀତ ଲେଖି ସବୁ ସୁନ୍ଦର ଲେଖି ନାହିଁ
ଏକାଗ୍ର ଲେଖି ମୁଁ ଅସୁନ୍ଦର ଲେଖି ନାହିଁ ।
ନାନାବି କାବ୍ୟ ରଚି ନନ୍ଦନିଦାନ ଦାନେ
ମୋ ଗ୍ରନ୍ଥ ପୂର୍ଣ୍ଣ କବିତାର ବିତାନ ତାନେ ॥1॥

ଅଭ୍ୟାସ ଯେ କରିବ ଛନ୍ଦର ବର୍ଣ୍ଣମାତ୍ରା
ପ୍ରସ୍ତାର ସର୍ଜନ ସହ ଦ୍ୱିମୟେ ବିଚିତ୍ରା ।
ସାନନ୍ଦ ଆସ ଶନିବାର ନିବାର ବାର
ତେବେ ମୁଁ ହେବି ବସୁଧାର ସୁଧାରଧାର ॥2॥

(୧) ନନ୍ଦ= ଆନନ୍ଦ; ନିଦାନ= ନିର୍ଭ୍ରମତା; ବିତାନ= ସ୍ତୁପ, କୁଦ, ଗଦା, **heap**, ବହୁଳତା;
(୨) ବର୍ଣ୍ଣ= ଲଘୁ ଓ ଗୁରୁ ବର୍ଣ୍ଣ; ମାତ୍ରା= ଉଚ୍ଚାରଣକାଳର ଆକଳନ ବିଧି; ପ୍ରସ୍ତାର= ଛନ୍ଦୋଚୟର **spread- sheet**; ଦ୍ୱିମୟ= **binary numbers**; ନିବାର= ଅଙ୍କୁଶ, **restriction**; ଧାର= ଧାରକ, ସହାୟକ, ସ୍ରୋତ, ବିଚ୍ଛୁରଣ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
**221/211/121/121+22**
**by LKabi 20231207**

## ସୁରଲୋକଯାତ୍ରୀ 100

କା ସଞ୍ଚିକା ଦିଶୁଛି ଆଖିକୁ ବେଶି ମୋଟା
କା ମାନପତ୍ରଚୟ ହାତକୁ ବେଶି ଭାରୀ ।
ସେତେ ବିଦଗ୍ଧ କବି ସେ ନିଜ କଳ୍ପନାରେ
ହେବେ ଦିନେ ମରି ଗଲେ ସୁରଲୋକ ଯାତ୍ରୀ ॥

ସଞ୍ଚିକା= ଫାଇଲ୍ (**file**); ବିଦଗ୍ଧ= ପଟୁ, ଦକ୍ଷ; ସୁରଲୋକ= ସ୍ୱର୍ଗ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
**221/211/121/121+22**
**by LKabi 202502190145**

## ପାଣିଗ୍ରହଣ 099

ରୋମାଞ୍ଚ ଭାରେ ବର ହସ୍ତ କମ୍ପେ
କନ୍ୟାକରେ ସ୍ୱେଦ ହୁଏ ଅବାଧ ।
ଅଗ୍ରେ କିଏ ଚାହିଁ ନ ଚାହିଁ ପାରେ
ଆବନ୍ଧନେ ପ୍ରେମ ହୁଏ ପ୍ରସାଦ୍ୟ ॥

ଆବନ୍ଧନ= ବନ୍ଧନେ; ସ୍ୱେଦ= ଘର୍ମ, ଝାଳ;
ପ୍ରସାଦ୍ୟ= ପ୍ରସାଦତୁଲ୍ୟ;

ଛନ୍ଦ: ଇନ୍ଦ୍ରବଜ୍ରା ତୌ ଜଗୌ ଗଃ
221/221/121+22
by LKabi 202502190025

## କ୍ରୂର ରାଜା 098

ନତଶିର ପର ଦେଶେ ଭାଷଣେ ସିଂହ ଦେଶେ
ଅରି ସହ ଲଢିବାଟା ନାହିଁ କେବେ ବି ଦେଖା ।
ନିଜର ଜନ ସମକ୍ଷେ ସର୍ବଦା ଖଡ୍ଗହସ୍ତ
ସମୟ କହିବ ନିଶ୍ଚେ କ୍ରୂର ଏ ଦୁଷ୍ଟ ରାଜା ॥

ଛନ୍ଦ: ମାଳିନୀ ନନମୟୟ
111/11122•2/122/122
by LKabi 202502170154

## କେ ଶିବ କେ ଶବ 097

ଅର୍ଜୁନଦ୍ରୁପଦେ ବାନ୍ଧି
କେ ଶବେ ଜାଳିଲେ ଜନେ ।
କାରବେ କାନ୍ଦିଲେ ଦେଖି -
"ଆହା କେ ଶିବ କେ ଶବ ।"
ଅର୍ଥାତ୍:

*ଅର୍ଜୁନଗଛର ଦ୍ରୁପଦ(କାଠଗଣ୍ଡି)ରେ ବାନ୍ଧି କ (ବା ଅଗ୍ନି)ରେ  (ଏକ)  ଶବକୁ ଲୋକେ ଜାଳି ଦେଲେ । ଏହା ଦେଖି କାରବ (କାଉ) ଗୁଡିକ କାନ୍ଦି କହୁଥାନ୍ତି - ଆହା କିଏ ଏହି ଶିବ (ସୌମ୍ୟ) ପୁରୁଷ, କିଏ ଏହି ମୃତାତ୍ମା !!*

ଛନ୍ଦ:  ପଥ୍ୟାବକ୍ତ୍ର ଅନୁଷ୍ଟୁପ୍     (ଶ୍ଳୋକଛନ୍ଦ)

ଶ୍ଳୋକେ ଷଷ୍ଠଂ ଗୁରୁ ଜ୍ଞେୟଂ
ସର୍ବତ୍ର ଲଘୁ ପଞ୍ଚମଂ ।
ଦ୍ବିଚତୁଷ୍ପାଦୟୋର୍ହ୍ରସ୍ବଂ
ସପ୍ତମଂ ଦୀର୍ଘମନ୍ୟୟୋଃ ॥

by  LKabi  202502162353

## ଜଳଜଶିଶୁ କହେ  096

ସରିତ ଝର ଜଳେ  ବାୟୁଗୁଳ୍ମ ସାଥେ,
ଅଳପ ଗତି ପଥେ  ସନ୍ତରି ପ୍ରମତ୍ତେ
ରହି ରହି ଗଗନେ  ଦେଖି ଚନ୍ଦ୍ରତାରା
ଜଳଧର ଭିତରେ,  ଶଙ୍କଳୀ ଅଧୀରା । ୧

ଦିଶୁଛି ନିକଟରେ ଦାଶଭାଗିନେୟ,
ପ୍ଲବ ଭିତର ନିଧା,  କାମନା ଅମେୟ,
ଟଳମଳ ତରଣୀ,  ଲୋଭ ଅପ୍ରମେୟ
ଜଳଚର ବିକିଲେ  ପ୍ରାପ୍ତି ଅନ୍ନପେୟ । ୨

ହସୁଅଛି ମଉନେଶାକଳୀ-ପ୍ରଜାତା:
କି କହିବି ଘଡିକେ  କାର ଭାଗ୍ୟଲେଖା,
ଯଦି ବଢିବ ଟିକେ  ଏହିଠାର ଊର୍ମି
ନିମିଷକ ଭିତରେ  ଶେଷ ହେବ କାମୀ ।୩

ଯିବ କି ରହିବ ସେ  ଏହି ବାତ ଅନ୍ତେ
ରଖିଅଛି ମନସେ  ଏଠୁ ନେବ ମୋତେ:
ବିକିବ, ଦି ପଇସା  ନେବ ବାସ ଯାକେ,
ନମ ନମ କରିବେ  ଗ୍ରାମ ଦାଣ୍ଡ ଲୋକେ ।୪

ବାୟୁଗୁଳ୍ମ= ଆବର୍ତ୍ତ, whirkpool; ଜଳଜ= ଶଲ୍କଳୀ= ଜଳଚର= ଶାକଳୀ= ମାଛ; ଦାଶଭାଗିନେୟ= କେଉଟର ଭଣଜା; ପ୍ଲବ= ନୌକା; ନିଧା= ଜାଲ; କନ୍ୟକା= ଝିଅ, କନ୍ୟା;

ଛନ୍ଦ: ଚନ୍ଦ୍ରିକା 23/1344 ସୂତ୍ର:
ନନତରଗୁରୁଭିଶ୍ଚନ୍ଦ୍ରିକାଶ୍ୱଷଡ୍ଭିଃ
111/111/2••21/212 + 2

by L Kabi 202112231145

## ସଦ୍‌ବୁଦ୍ଧି 095

ଯେ ଶୁଣେ କିନ୍ତୁ କେବେ ନ ମାନେ କଥା
ତାକୁ ସଦ୍‌ବୁଦ୍ଧି ଦେବା ହିଁ ନିର୍ବୋଧତା ।
ଆପଦା ଅନ୍ଧହାତେ ଯଥା ଦର୍ପଣ
ଶ୍ରୋତ୍ରହୀନେ କି ବା ମୂଳିକା ଚର୍ବଣ ॥

ଶ୍ରୋତ୍ରହୀନ= କାଲା; ମୂଳିକା= ମୂଳା; ଚର୍ବଣ= ଚୋବାଇବା;

ଛନ୍ଦ: ସ୍ରଗ୍ୱିଣୀ (ରଣ୍ଟତୁର୍ଭିର୍ୟୁତା)
212/212/212/212

by L Kabi 202502151941

## ନିତ୍ୟନବୀନ 094

ଚରାଚରେ ଭୂମିଜଳାଦି ମଧ୍ୟେ
ସଙ୍ଗୀତ ରୂପେ ସ୍ଥିତ ସର୍ବପିଣ୍ଡେ ।
ଚନ୍ଦ୍ରାର୍କତାରାଗଣ-ରୂପଧାରୀ
ନୀରୂପ ସେ ନିତ୍ୟ ନବୀନ ରୂପେ ॥

ଚରାଚରେ= ସଜୀବ ତଥା ନିର୍ଜୀବ ବସ୍ତୁରେ; ଭୂମିଜଳାଦି= ପଞ୍ଚଭୂତ; ଚନ୍ଦ୍ରାର୍କ= ଚନ୍ଦ୍ରସୂର୍ଯ୍ୟ; ନୀରୂପ= ରୂପହୀନ;

ଛନ୍ଦ: ଇନ୍ଦ୍ରବଜ୍ରା ତୌ ଜଗୌ ଗଃ
221/221/121+22
by LKabi 202502151651

## ଶେଷ ରଶ୍ମି 093

ସହସା ଦିଗନ୍ତ ନିକଟେ ହଜିଲା
ସବିତାର ଶେଷ କିରଣ ପ୍ରସରା ।
ପୃଥ୍ୱୀର ଶେଷ ହିମବତ୍ କି ଥିଲା
ଦିନଟା ଜିଘାଂସୁ ଅତିରୋଷ ଭରା ॥

ହିମବତ୍= ପର୍ବତ; ଜିଘାଂସୁ= ନଷ୍ଟ କରିବାକୁ ଇଚ୍ଛୁକ;

ଛନ୍ଦ: ପ୍ରମିତାକ୍ଷରା 12/1772
ପ୍ରମିତାକ୍ଷରା ସଜସସଂ କଥିତା
112/121/112/112
by LKabi 202502150946

## ଭୀଷ୍ମପ୍ରତିଜ୍ଞା 092

ତାତଙ୍କ ସାଙ୍ଘାତିକ ଦେଖି ପୀଡା
କୈବର୍ତ୍ତକନ୍ୟା ବରିବା ସକାଶେ ।
ଗାଙ୍ଗେୟ ଭାଷେ ବିନୟସ୍ୱଭାବେ
ସେ ହେଉ ମୋ ମା ଧରି ଆଣ ପାଶେ ॥ 1

ଏ ଜୀବନେ ଛାଡିଲି ରାଜ୍ୟଭୋଗ
ଯା ତୁମ୍ଭ ଇଚ୍ଛା ପରିପୂର୍ଣ୍ଣ ହେବ ।
ଯେ ପୁତ୍ର ମା ସତ୍ୟବତୀର ଗର୍ଭୁ
ଭୂମିଷ୍ଠ ହେବେ ପଦ ତାଙ୍କୁ ଦେବ ॥2

ତାତ= ବାପା, ପିତା; ଗାଙ୍ଗେୟ= ଗଙ୍ଗାପୁତ୍ର ଭୀଷ୍ମ; ପଦ= ରାଜପଦ;

ଛନ୍ଦ: ଇନ୍ଦ୍ରବଜ୍ରା ତୌ ଜଗୌ ଗଃ
221/221/121+22
by LKabi 202502141627

## ଆଲିବାବା 091

ପ୍ରଥମ ଯୁଗର ଆଦ୍ୟେ କୌଶଳୀ ଆଲି ବାବା
ତ୍ରିଭୁବନ ଭିତରେ ସେ ସିଦ୍ଧ ତନ୍ତ୍ରାଂଶଭେଦୀ ।
ହରିକଦଳଠୁ ପେଞ୍ଚେ ଜାଣି ସଂଗୁପ୍ତଭାଷା
ପଶି ଧନଗୃହ ମଧ୍ୟେ ଅର୍ଜିଲା ରତ୍ନଗାଦି ॥

ପ୍ରଥମ ଯୁଗ= ସତ୍ୟଯୁଗ; ଆଦ୍ୟ= ଆରମ୍ଭ; ତନ୍ତ୍ରାଂଶ= software; ତନ୍ତ୍ରାଂଶ-ଭେଦୀ= software intercepter, hacker; ହରିକ= ଚୋର; ପେଞ୍ଚେ= କାଇଦାରେ; ସଂଗୁପ୍ତଭାଷା= password; ଗାଦି= ଗଦା, କୁଢ;

ଛନ୍ଦ: ମାଳିନୀ (ନନମୟୟ)
111/111/22••2/122/122
by LKabi 202502092240

## ସମଦୁଃଖ 090

ଅନ୍ୟଙ୍କ ଦୁଃଖେ କବି ଲେଖି ଚାଲେ
ଦୀନାର୍ତ୍ତର କ୍ଳେଶ ବିନାଶ ଲାଗି ।
ଉଦ୍ୱିଗ୍ନ ହେଲେ ହୃଦ ତାର କେବେ
ଲେଖେ କିଏ ସେ ସମ ଦୁଃଖଭାଗୀ ॥ 8

ଛନ୍ଦ: ଇନ୍ଦ୍ରବଜ୍ରା ତୌ ଜଗୌ ଗଃ
by LKabi 202502091311

## ଅଭିସାର 089

ଉଦ୍‌ବାଷ୍ପ ନେତ୍ରେ ଘନ ଘୋର ରାତ୍ରେ
କାନ୍ଦେ କିଏ ଦୀନ କୁଟୀର ପାଶେ ।
କା ଲାଗି ଏ ତା ଅଭିସାର ବେଳା
ଜାଣେ କିଏ, ସେ ତ ସଦା ଉଦାସେ ॥ 089

ଉଦ୍‌ବାଷ୍ପ= କୋହଭରା;

ଛନ୍ଦ: ଇନ୍ଦ୍ରବଜ୍ରା ତୌ ଜଗୌ ଗଃ
by LKabi 202502081318

## ସହଜକମଳା 088

ଯାହା ରମ୍ୟ ଶ୍ରବଣକମଳେ
ଶୋଭା ଭରା, ଲୋଚନେ
ଶ୍ରଦ୍ଧାଚ୍ଛାୟା, ଅଧରଫଳକେ
ଲାକ୍ଷାରସେ ଉଜ୍ଜ୍ୱଳା ।
ବର୍ଣ୍ଣେ ଗୌରୀ ସହଜକମଳା
ମାର୍ଗ କ୍ରମେ ସମ୍ଭ୍ରମେ
ସମ୍ପନ୍ନା ସେ ଲଳିତବନିତା
ପ୍ରାପ୍ତା କି କା ଜୀବନେ ॥

ଶ୍ରବଣ= କାନ; ଲୋଚନ= ଆଖି; ଲାକ୍ଷାରସ= ଲାକ୍ଷା ରଙ୍ଗ ବା ନାଲି ରଙ୍ଗ; ଉଜ୍ଜ୍ୱଳା= ଉଜ୍ଜ୍ୱଳତା, brightness; ସହଜକମଳା= ଜନ୍ମସ୍ୱଭାବରୁ ଆଡ୍ୟୁତ୍ତମା; କ୍ରମ= ପଦପାତ; ସମ୍ଭ୍ରମେ= ଭଦ୍ରଭାବେ; ସମ୍ପନ୍ନ= ପରିପୂର୍ଣ୍ଣ, ସମୃଦ୍ଧ ଆଦି; ଲଳିତ= ରମ୍ୟ;

ଛନ୍ଦ: ହାରିଣୀ 17/37361
ମ ଭ ନ ମ ୟ + ଲଗୁ
222/2••11/111/2••22/122+12
ସୂତ୍ର: ବେଦର୍ତ୍ୱଶ୍ୱୈର୍ମଭନମୟଲା ଗାଶ୍ଚେଦ୍‌ଭବେଦ୍ଧାରିଣୀ
(*ସନ୍ଧିବିଚ୍ଛେଦ:* ବେଦଃ+ଋତୁ+ଅଶ୍ୱଃ+ମଭନମୟଲା
ଗାଃ+ଚେତ୍+ଭବେତ୍+ହାରିଣୀ ।)
by LKabi 202502051817

## ପୁନର୍ମୂଷିକା 087

ପୁନର୍ମୂଷିକା ହେଲୁ ଯା ଶେଷ ପର୍ବେ
ପୁନର୍ଗଦ୍ୟରେ ଦେଲୁ ତୋ ଚିତ୍ତରାଗ ।
ବୃଥା ମୋ ଗଲା ସାଧନା ଅଗ୍ନିଗର୍ଭେ
କି ବେଳା ଥିଲା ସେ କି ମିଥ୍ୟା ପ୍ରୟୋଗ ॥

ପର୍ବ= କାଳ; ରାଗ= ଶ୍ରଦ୍ଧା, ରୁଚି;

ଛନ୍ଦ: ଭୁଜଙ୍ଗପ୍ରୟାତ 122×4 ସୂତ୍ର:
ଚତୁର୍ଭିର୍ୟକାରେ ଭୁଜଙ୍ଗପ୍ରୟାତମ୍
by LKabi 2025021653

## ବିଦ୍ୟାଙ୍ଗନେ 086

ବିଦ୍ୱନ୍ମଣ୍ଡଳ ସମ୍ମୁଖେ ନତଶିରେ
ମୌନାଶ୍ରୟେ ବାଳିକା
ଆଜ୍ଞାପ୍ରାପ୍ତି କଲେ ପ୍ରକାଶିବ ଥିବା
ସନ୍ଦେହ ବିଦ୍ୟାଙ୍ଗନେ ।
ସଂକ୍ଷେପେ ଅନୁଯୋଗ ବାଢ଼ିବ କରେ
ସଦ୍ଗ୍ରନ୍ଥ ଆଖ୍ୟାୟିକା
ବିଦ୍ୱଦ୍ବର୍ଗପଦେ କି ଦେବ ଲଳନା
ଉଦ୍ଦାନ୍ତ ପୂଜାର୍ଚ୍ଚନେ ॥

ବିଦ୍ୱନ୍ମଣ୍ଡଳ= ବିଦ୍ୱତ୍+ମଣ୍ଡଳ, ବିଦ୍ୱାନ୍ ଜନଙ୍କ ମଣ୍ଡଳ ବା ସମଷ୍ଟି; ଅନୁଯୋଗ= ପ୍ରଶ୍ନ; ବିଦ୍ୱଦ୍ବର୍ଗ= ବିଦ୍ୱତ୍+ ବର୍ଗ, ବିଦ୍ୱାନ୍ ଜନଙ୍କ ସମୂହ; ଉଦ୍ଦାନ୍ତ= ନମ୍ର, humble;

ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍ ମସଜସତତ +ଗୁ
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
222/112/121/112••221/221+2
by LKabi 202502051415

## ଆ ବିପ୍ଳବୀ 085

ପର୍ଯ୍ୟାପ୍ତ ଲୋକେ ରଖଛନ୍ତି ଆଶା
କେ ବିପ୍ଳବୀ ଜନ୍ମିବ ଏହି ଦେଶେ ।
ତା ଜନ୍ମଟା ମୋ କୁଳରେ ନ ହେଉ
ସେ ଜନ୍ମୁ ପାଶେ ପଡିଶା ନିବାସେ ॥

ଛନ୍ଦ; ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202502031731

## ପର ପାଇଖାନା 084

ନିର୍ନେତ୍ର ଭାଷେ ନିଜ ଧର୍ମ ଛାଡି
ଅନ୍ୟାନ୍ୟ ବର୍ଗେ ଥିବ ଦୋଷ ଦେଖା ।
ଭାଷାନ୍ତରେ ଛେରି ନିଜ ପ୍ରଶାଳେ
ଆ ପୋଛିବା ଅନ୍ୟର ପାଇଖାନା ।

ନିର୍ନେତ୍ର= ଅନ୍ଧ; ବର୍ଗ= ସମ୍ପ୍ରଦିୟ, ସମୁଦାୟ;
ପ୍ରଶାଳା= hall, ସଭାଗୃହ, ବଡ କୋଠରୀ;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202502031305

## କର୍ମଫଳ 083

କେବେ ବି ଏକ ବୁଡ ମାରିକି କୁମ୍ଭମେଳେ
ପର୍ଯ୍ୟାପ୍ତ ପାପ ନ ମରେ ନ ହୁଏ ବି ଊଣା ।
ଦୁର୍ଜାତ ଭାଷଣ ପୁଳେ କରୁ ଭଣ୍ଡ ବାବା
ନିଶ୍ଚେ ତୁ କର୍ମଫଳ ଭୋଗିବୁ ମୂଢ ଯାତ୍ରୀ ॥

ଦୁର୍ଜାତ= ମିଥ୍ୟା, ଭ୍ରମାତ୍ମକ, ଦୁଷ୍ଟ, ଧୂର୍ତ୍ତ, ଖଳ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by LKabi 202502020124

## ଅନିତ୍ୟ ଶକ୍ତି 082

ଦୀପ୍ତାଂଶୁ ଅମ୍ବରପଥେ ଚଢି ରାତ୍ରି ନାଶେ
ମଧ୍ୟାହ୍ନରେ ଦହି ଦିଏ ପୃଥିବୀ ସମଗ୍ର ।
ଏ ତାର ଦର୍ପ ବି ସରେ ପ୍ରତି ସାୟ କାଳେ
ଧୀମାନ୍ ଅନିତ୍ୟ ବଳରେ ନ ହୁଏ ସଗର୍ବ ॥

ଦୀପ୍ତାଂଶୁ= ସୂର୍ଯ୍ୟ; ସାୟ= ସନ୍ଧ୍ୟା; ଧୀମାନ୍= ବୁଦ୍ଧିମାନ୍; ଅନିତ୍ୟ= କ୍ଷଣସ୍ଥାୟୀ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by LKabi 202502812023

## ସାଧୁବେଶବାଣୀ 081

ସନ୍ନ୍ୟାସିବେଶ ଧରି ରାବଣ ବିଂଶପାଣି
ସୀତାଙ୍କୁ ଭୈକ୍ଷବଚନେ ହରିଲା ସ୍ୱଦେଶେ ।
ଆସ୍ଥା ନ ବାଢ ଶୁଣି କା ମୁଖୁ ଶାସ୍ତ୍ର ବାଣୀ
କିମ୍ବା ନିରେଖି ଅଛି କେ ଜନ ସାଧୁବେଶେ ॥

ଭୈକ୍ଷ= ଭିକମଗା;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by LKabi 202502011925

## ଶଙ୍କିତା ଚାରୁବାଳା 080

ଆଲୋଳା ଜୂଟସଜ୍ଜା ପ୍ରଚଳିତଚିକୁରା
ମୂର୍ଦ୍ଧନେ ସ୍ୱେଦବିନ୍ଦୁ
ବିମ୍ବୋଷ୍ଠେ ପନ୍ନଶୋଭା ପୃଥୁଳ ବୁକୁ ତଳେ
ଲମ୍ବିତା ରତ୍ନମାଳା ।
ଦୋଳେ ବିଭ୍ରଂଶ କିଞ୍ଚିତ୍ କମର ମଣିସୁନା
ଲାଜ ଢାଙ୍କେ କରାଗ୍ରେ
ସନ୍ଦଗ୍ଧା ସ୍ୱୀୟ ରୂପେ ତଦପି ବିଲୁଳିତା
କମ୍ପିତା ଚାରୁବାଳା ॥

ଜୂଟ= ଜୁଡା; ପ୍ରଚଳିତ= ଥରୁଥିବା; ଚିକୁର= କେଶ; ମୂର୍ଦ୍ଧନ୍= କପାଳ; ପନ୍ନ= ବିପନ୍ନ, ନଷ୍ଟ; ପୃଥୁଳ= ପ୍ରସସ୍ତ; ବିଭ୍ରଂଶ= ଖସି ଯାଇ ଥିବା; କରାଗ୍ର= ହାତର ଆଙ୍ଗୁଳି; ସନ୍ଦଗ୍ଧ= ମଗ୍ନ; ସ୍ୱୀୟ= ନିଜ; ତଦପି= ତଥାପି; ବିଲୁଳିତ= ବ୍ୟତିବ୍ୟସ୍ତ;

ଛନ୍ଦ: ସ୍ରଗ୍ଧରା ସୂତ୍ର:
(ମ୍ରଭ୍ନୈର୍ଯାଣାଂ ତ୍ରୟେଣ ତ୍ରିମୁନିୟତିଯୁତା)
ମରଭନ ୟୟୟ
222/212/2••11/111/12••2/122/122
by LKabi 202502011326

## ଉପଜାତି ଛନ୍ଦ 079

ପାର୍ଥକ୍ୟ କିଞ୍ଚିତ୍ ରହି ଜନ୍ମରୂପେ
ସଂସକ୍ତ ଯେବେ ରତ ଏକ ମାର୍ଗେ ।
ସମ୍ମିଶ୍ରଣେ ସେ ପରି ବେନି ପାଦ
ଯେ ଛନ୍ଦ ଜନ୍ମେ ଉପଜାତି ନାମ ॥1

ଏ ବୃତ୍ତ ରତ୍ନାକରଦତ୍ତ ଶିକ୍ଷା
ଅବିଘ୍ନ ପାର୍ଥକ୍ୟର ନାହିଁ ସଂଜ୍ଞା ।
ବାଗ୍ୱଲ୍ଲଭେ ସ୍ପଷ୍ଟ ମିଳେ ନିଦେଶ
ଆଦ୍ୟାକ୍ଷରେ ତା ତନୁତୁମ୍ର ଭେଦ ॥ 2

ଅବିଘ୍ନ= ନିରନ୍ତର; ବୃତ୍ତରତ୍ନାକର= ପ୍ରସିଦ୍ଧ ଛନ୍ଦୋଗ୍ରନ୍ଥ; ବାଗ୍ୱଲ୍ଲଭ= ଏ ମଧ ପ୍ରସିଦ୍ଧ ଛନ୍ଦୋଗ୍ରନ୍ଥ; ତନୁ-ତୁମ୍ର= ଲଘୁ-ଗୁରୁ;

ଛନ୍ଦ: ଉପଜାତି (ଇ+ଉ)
by LKabi 202501312030

## ସଦ୍ଗୁଣ 078

ସବୁ ଗ୍ରନ୍ଥେ ଲେଖା ପଢ ଶିଖି ତୁ ହେ ଭାରି ବିଦୁଷୀ
ସଦାଚାରେ ନିଷ୍ଠେ ବଢିବ ଯଶ ହେଲେ ସୁପୁରୁଷୀ I
ମୁଁ ଥାଏ ବା ଯାଏ ଅପରପୁର ତେବେ ଥିବ ମହୀ
ଦିନେ ଶୈଳାଧାରା ସୁଖ ଲଭିବ ତୋ ସଦ୍ଗୁଣ କହି II

ସୁପୁରୁଷୀ= ଉତ୍ତମା ନାରୀ; ଶୈଳାଧାରା= ପୃଥିବୀ;

ଛନ୍ଦ: ଶିଖରିଣୀ ସୂତ୍ର:
(ରସୈର୍ରୁଦ୍ରୈଶ୍ଛିନ୍ନା ୟଯନସଭଲା ଗଃ)
122/222••111/112/211 + 12
by LKabi 202501311224

## ଅଭୀପ୍ସା 077

ବହୁଦିନୁ ନୀରବେ ତୁ ଅଛୁଚାପି ଭାବ ବନ୍ୟା
ସ୍ଫୁରୁ ମୁଖୁ ତୋର ଆଜ ମନ ଖୋଲି ସତ୍ୟ ଭାଷା I
ଅଧିକ ନ ଭାଳି ମୋର ହୁଅ ନିର୍ଭୟେ ସୁକନ୍ୟା
ତରଳିତ ଓଷ୍ଠ ତୋର କହି- ଲାଣି ତୋ ଅଭୀପ୍ସା II

ତରଳିତ= କମ୍ପ୍ର, ଥରୁଥିବା; ତରଳିତ= ଥରଥର;

ଛଦ; ବାଣିନୀ ନ ଜ ଭ ଜ ର + ଗୁ ସୂତ୍ର:
(ନଜଭଜରୈର୍ୟଦା ଭବତି ବାଣିନୀ ଗୟୁକ୍ତୈଃ)
111/121/211/121/212+2
by LKabi 202501310225

## ପ୍ଲବଗା ଢଗ ଗା 076

ପ୍ଲବଗା ଶିଖି ଗା ଢଗ ରଙ୍ଗଲଗା
ପୁରୁଣା ଘଟଣା ଅଧୁନା ତୁ ନ ଗା ।
ସୁତ ତନ୍ମୟଚିତ୍ତ ସୁତତ୍ତ୍ୱ ମତେ
ବୁଝି ସତ୍ୱର ତାରୁ ସୁଦୂରଗତେ ॥

ପ୍ଲବଗ= ବେଙ୍ଗ, ସ୍ତ୍ରୀ. *ପ୍ଲବଗା;* ଢ= ଆଜି, ଏବେ; ସୁତତ୍ତ୍ୱ= ପୁତ୍ରପଣିଆଁ; ମତେ= ଅନଡଯାୟୀ; ସତ୍ୱର= ଶୀଘ୍ର: ତାରୁ= ତାରଣ କରୁ; ସୁଦୂରଗତ= ଯେଉଁମାନେ (ମରି) ଏବେ ଦୂରସ୍ଥ;

ଛନ୍ଦ: ତୋଟକ
ସୂତ୍ର: (ଇହ ତୋଟକମମ୍ବୁଧିସକାରକୃତମ୍)
112/112/112/112
by LKabi 202501302132

## ଯୁଦ୍ଧାସ୍ତ୍ର 075

ରାଜ୍ୟେ ନ ଥାଏ ଉଦରାର୍ଥ ପେଷା
ଉତ୍ସନ୍ନ ଲୋକେ ଅତି ଶୁଳ୍କ ଭାରେ ।
ସେ ଦେଶ ଲାଗେ ପରଦେଶତୁଲ୍ୟ
କ୍ରମେ ପରାଧୀନ ବି ହେଇ ପାରେ ॥ 1

ଲୋକଙ୍କ ଆସ୍ଥା ମନୁଜେନ୍ଦ୍ରଶକ୍ତି
ତାହା ବିନା ଭୂପତି ଶସ୍ତ୍ରହୀନ ।
ଭଙ୍ଗା କୃପାଣେ ଲଢିବା କି ଯୁକ୍ତି
ଅରାତି ହାତେ ଶିର ହେବ ଛିନ୍ନ ॥ 2

ମନୁଜ= ମଣିଷ, ମନୁଜେନ୍ଦ୍ର-ଶକ୍ତି=
ରାଜାର ଶକ୍ତି; ଭୂପତି= ରାଜା;
କୃପାଣ= ଖଣ୍ଡା; ଅରାତି= ଶତ୍ରୁ;

ଛନ୍ଦ: ଉପଜାତି (*ଇନ୍ଦ୍ରବଜ୍ରା* ଓ *ଉପେନ୍ଦ୍ରବଜ୍ରା*
ପଙ୍କ୍ତିର ସମ୍ମିଶ୍ରଣ)
**by LKabi 202501292329**

## ବିବାହସଙ୍ଗୀତ 074

ଉଷ୍ଟ୍ରଙ୍କ ଉଦ୍ୱାହନ ଦେଖି ହର୍ଷେ
ପ୍ରଶଂସନେ ଗର୍ଦ୍ଦଭ ଗୀତ ଗାନ୍ତି ।
କି ପ୍ରେମନିଷ୍ଠା କି ମଧୁ ପ୍ରତିଜ୍ଞା
ସୁରମ୍ୟଶୋଭା ଅପରୂପ କାନ୍ତି ॥1

ପ୍ରତ୍ୟୁତ୍ତରେ ଧନ୍ୟ କହେ ମହାଙ୍ଗ
କି ଦୁର୍ଲଭ ଖ୍ୟାତ ଗଧଙ୍କ ଜାତି ।
ଅତ୍ୟନ୍ତ ବିଦ୍ୱାନ୍ ଗଧବଂଶ ସାରା
କି ଦିବ୍ୟ କଣ୍ଠେ କି ଅପୂର୍ବଗୀତି ॥ 2

ଉଷ୍ଟ୍ର= ଓଟ; ଉଦ୍ୱାହନ= ବାହାଘର;
ଗର୍ଦ୍ଦଭ= ଗଧ; ମହାଙ୍ଗ= ଓଟ;

ଛନ୍ଦ: ଉପଜାତି (*ଇନ୍ଦ୍ରବଜ୍ରା* ଓ ଉପେନ୍ଦ୍ରବଜ୍ରା
ପଙ୍କ୍ତିର ସମ୍ମିଶ୍ରଣ)
**by LKabi 202501290858**

## ପ୍ରେମକନ୍ୟା 073

ଥରେ ଅଙ୍ଗନେ ନୀର ମୋ ସିଞ୍ଚିବାରେ
ଲତା ସୁନ୍ଦରୀ ଜାଗିଲା ସେହି ଠାରେ ।
କ୍ରମେ ମଞ୍ଜରୀ ଜନ୍ମିଲା ସେ ଲତାନ୍ତେ
ପଦେ ଲେଖିଲି ପ୍ରୀତିରେ ତା ନିମନ୍ତେ ॥ 1

ପଢି ପ୍ରୀତିପୂର୍ଣ୍ଣ ମିଠା ଗୀତି ଲେଖା
ଝଲା ସୁନ୍ଦରୀ ସାଜିଲା ମୋ ଅଭୀକା ।
ପରେ ସଙ୍ଗିନୀ ବେଶରେ ମୋ ନିବାସେ
ଥିଲା ପ୍ରେମ ରଙ୍ଗେ ସଦା ମୋର ପାଶେ ॥ 2

ଦିନେ ଦୂରଯାତ୍ରା କଲା କଣ୍ଠମାଳା
ମରୁପ୍ରସ୍ଥ ହେଲା ସୁଖାବର୍ତ୍ତଶାଳା ।
ମିଛେ ନୀର ଢାଳେ ମନେ ଥାଇ ନିଷ୍ଠା
ଉଠେ ନା ଲତା ଲେଉଟା ନା ଅଭୀଷ୍ଟା ॥ 3

ଲତାନ୍ତ= ଲତାର ଅଗ୍ରଭାଗ; ଝଲା= ବାଳିକା; ଅଭୀକା= ପ୍ରେମିକା; ମରୁପ୍ରସ୍ଥ= ମରୁଭୂମିର ବିସ୍ତାର; ଆବର୍ତ୍ତ= ଘୂରି ବୁଲିବା; ଅଭୀଷ୍ଟା= ଆକାଙ୍କ୍ଷିତା; ।

ଛନ୍ଦ: ଭୁଜଙ୍ଗପ୍ରୟାତ **122×4** ସୂତ୍ର:
ଚତୁର୍ଭିର୍ୟକାରେ ଭୂଜଙ୍ଗପ୍ରୟାତମ୍
**,by LKabi 202501281027**

## ଲବଙ୍ଗଲତା 072

ଶୁଣି ଯା ତୁ ଲବଙ୍ଗ ଲତା
ମନ ନେଇ ନ ଯା ବିମନେ ।
କିଛି ଲେଖିଛି ନେ କବିତା
ପଢ ତାକୁ ଥରେ ବିଜନେ ॥ 1

କିଛି ସେଥିରୁ ଦୀର୍ଘତରା
ଖଲୁ ରାସକ ଏକପଦୀ ।
ନୁହଁ ସୁନ୍ଦର ଶବ୍ଦଭରା
ରସରାଗ ଭରା ଦରଦୀ ॥ 2

ଶୁଣ ଆଗ ତୁ ଶାନ୍ତମନେ
ଅତି ଦୁଃଖ ନ ଦେ ବନିତା ।
ତିନି ସଙ୍କର ସଂଯମନେ
ଟିକି ଅର୍ଦ୍ଧକଳା କବିତା ॥ 3

ଖଳୁ= କିନ୍ତୁ; ରାସନ= ହଜମଶକ୍ତିବର୍ଦ୍ଧକ; ସ= *ସ-ଗଣ*: ଛନ୍ଦଶାସ୍ତ୍ରରେ ତିନି ବର୍ଣ୍ଣର ଲଘୁ-ଲଘୁ-ଗୁରୁ (ବା 112) - ଏହି ସଜ୍ଞାର ନାମ *ସ-ଗଣ* I ଅଷ୍ଟଗଣ ଭିତରେ *ସ-ଗଣ* ଅନ୍ୟତମ; ସଂଯମନ= ମିଳନ; ଅର୍ଦ୍ଧକଳା= ଏହି ଛନ୍ଦ, ବର୍ଣ୍ଣକ୍ରମ 112/112/112;

ଛନ୍ଦ: ଅର୍ଦ୍ଧକଳା (ସଗଣତ୍ରୟମର୍ଦ୍ଧକଳା)
112/112/112
by LKabi 202501272127

## ଚିତ୍ତଯୋଗ 071

ନୀଳାଦ୍ରିନାଥଚରଣେ ରଖି ଅର୍ଘ୍ୟ ଥାଳୀ
ଏବେ ଅସୀମ ନିକଟେ ରହ ଚିତ୍ତଯୋଗେ I
ନିଶ୍ଚେ ବ୍ୟଥାର୍ଣ୍ଣବରୁ ପାରି ତୁ ହେବୁ ବାଳୀ
ଆଗେ ନ ଦୁଃଖ ମିଳୁ ପୀଡନରେ କି ରୋଗେ II

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by LKabi 202501271727

## ବୈକୃତ୍ୟ 070

କେତେକ ବୈକୃତ୍ୟ ବି ମାନ୍ୟତା ଦିଏ
କଲ୍ୟାଣକାର୍ଯ୍ୟେ ଯଦି ବିକ୍ରିୟା ହୁଏ I
ସର୍ବୋପକାରେ ବିଷପାନ କାରଣେ
ଦେବେଶକଣ୍ଠେ ଶିତିରଙ୍ଗ ଯେସନେ II

ବୈକୃତ୍ୟ= ବିକୃତି; ମାନ୍ୟତା= ପ୍ରଶଂସା; ବିକ୍ରିୟା= ବିକୃତି; ଦେବେଶ= ଶିବ; ଶିତି= କଳା, ନୀଳ;

ଛନ୍ଦ: ଇନ୍ଦ୍ରବଂଶା ସୂତ୍ର:
ସ୍ୟାଦିନ୍ଦ୍ରବଂଶା ତଯୁଗଂ ଯଦା ଜରୌ
221/221/121/212
by LKabi 202501271127

## ନେତ୍ରବାରି 069

ନିଶ୍ଚେଷ୍ଟ ଢାଳୁଛ ମିଛେ ତବ ନେତ୍ରବାରୀ
ଲାବଣ୍ୟ ନଷ୍ଟ କରି ଚାଲିଛ ଚାରୁ ଅଙ୍ଗେ ।
ସାମାନ୍ୟ ସେଥିରୁ କରେ ଦିଅ ମୋର ନାରୀ
ଏ ଶ୍ୟାମ ଶଷ୍ପ ଲଢି ପାରିବ ବାତ ସଙ୍ଗେ ॥

ନିଶ୍ଚେଷ୍ଟ= ଅସହାୟ; ନେତ୍ରବାରୀ= ଲୁହ; ଲାବଣ୍ୟ= ସୌନ୍ଦର୍ଯ୍ୟ; ଶଷ୍ପ= କୋମଳ ତୃଣପତ୍ର; ବାତ= ଝଡ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by LKabi 202501231123

## ଯାତ୍ରା 068

କାନ୍ତାରମାର୍ଗେ ଘନ ଘୋର ରାତ୍ରୀ
ସେ ମାର୍ଗରେ କ୍ଳାନ୍ତ ମନୁଷ୍ୟ ଯାତ୍ରୀ ।
ଯାତ୍ରାପଥେ ମାଡି ନ ଆସୁ ନିଦ୍ରା
ଉତ୍ସାହ ଦେ ମା କବିତା ବିଚିତ୍ରା ॥

କାନ୍ତାର= ବନ, ବନପଥ;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by L Kabi 202501270127

## ସୁନ୍ଦରୀ 067

ସୁନ୍ଦରୀ ଲଳନିକାର ଚୌଦିଗେ
ଭାଳ ନା ସ୍ତବକ ସର୍ବଦା ଥିବେ ।
ରାତିଟା ଜଳିବ ସେହି ବର୍ତ୍ତିକା
ଶୀଘ୍ର ସେ ହଜିବ ଭସ୍ମ ସାଜିକା ॥

ଲଳନିକା= ଲଳନା, ତରୁଣୀ; ସ୍ତବକ= ପ୍ରଶଂସକ; ବର୍ତ୍ତିକା= ସଳିତା; ଭସ୍ମ= ପାଉଁଶ;

ଛନ୍ଦ: ରଥୋଦ୍ଧତା (ରାପ୍ରୈର୍ନରଲଗାଃ....)
212/111/212+12
by LKabi 202501262026

## ଦଣ୍ଡବିଧାତା 066

ଦେଶର ସମ୍ପଦ ବିକ୍ରୟକର୍ତ୍ତା
ଦ୍ୱେଷ ବିଭେଦର ସିଞ୍ଚନକାରୀ
ସେ ଯଦି ସାଜିବ ଦଣ୍ଡବିଧାତା
ଦେଶକୁ ବର୍ଜିବେ ସତ୍ପଥଚାରୀ ॥ 1

ଅନ୍ତର ତୀକ୍ଷ୍ଣରସେ ପରିପୂର୍ଣ୍ଣ
ଆନନଭାଷିତ ପୁସ୍ତକ ଘୋଷା ।
ତା ସବୁ ଦର୍ପ ନ ହେବ ତ ଚୂର୍ଣ୍ଣ
ଦୁଃଖ ହିଁ ପାଉବ ଉଷରୁ ଦୋଷା ॥ 2

ଦଣ୍ଡବିଧାତା= ରାଜା; ସତ୍ପଥଚାରୀ= ସାଧୁ, ସଜ୍ଜନ; ତୀକ୍ଷ୍ଣରସ= ବିଷ; ଉଷରୁ ଦୋଷା= ସକାଳରୁ ସଞ୍ଜ;

ଛନ୍ଦ: ଦୋଧକ (ଦୋଧକମିଚ୍ଛତି ଭତ୍ରିତୟାଦ୍ଗୌ)
211/211/211+22
by LKabi 202501261433

## ଧୀରେ ଧୀରେ 065

ଧୀରେ ଧୀରେ ସଲିଳକଣରେ
ସୃଷ୍ଟ ମୁକ୍ତାର ବିନ୍ଦୁ
ଧୀରେ ଧୀରେ କିରଣ ବିତରେ
ପଙ୍କଜେ ଶାନ୍ତ ଇନ୍ଦୁ ।
ଧୀରେ ଧୀରେ ଜନନିଜଠରେ
ବିଗ୍ରହପ୍ରାପ୍ତ ପୁତ୍ର
ଧୀରେ ଧୀରେ ଶୁଭ ଫଳ ଧରେ
ଏହି ସାମାନ୍ୟ ସୂତ୍ର ॥

ଛନ୍ଦ: ମନ୍ଦାକ୍ରାନ୍ତା ସୂତ୍ର:-
ମନ୍ଦାକ୍ରାନ୍ତମ୍ବୁଧିରସନଗୈର୍ମୋ ଭନୌ ତୌ ଗୟୁଗ୍ମମ୍
222/2••11/111/2••21/221+22
by LKabi 202501261026

## ନର୍ତ୍ତକୀ 064

ବନଫୁଲ ଭରି ମାଥେ ବାଣିନୀ ବର୍ତ୍ତୁଳାକ୍ଷୀ
ଅଳସ ଚଟୁଳ ତାଳେ ବାହ୍ବଳେ ବୋଳି ଲାକ୍ଷା ।
କହୁଛି କରୁଣ କଣ୍ଠେ କଳ୍ପନା ଖର୍ବଶାଖା
ହୃଦୟକୁହର ମଧ୍ୟେ କମ୍ପିତା କାମକକ୍ଷା ॥

ବାଣିନୀ= ନର୍ତ୍ତକୀ; ବର୍ତ୍ତୁଳାକ୍ଷୀ= ତକା ଆଖି; ଚଟୁଳ= ରମ୍ୟ; ବାହ୍ବଳ= ଓଠ; ଲାକ୍ଷା= ନାଲି ରଙ୍ଗ; ଖର୍ବ= ସାନ; କକ୍ଷା= ଭାରସାମ୍ୟ;

ଛନ୍ଦ: ମାଳିନୀ (ନନମୟୟ)
111/111/22••2/122/122
by LKabi 202501252325

## ନିଶ୍ଚକ୍ଷୁ 063

ନିଶ୍ଚକ୍ଷୁ ନିଶ୍ଚକ୍ଷୁର ମାର୍ଗଦର୍ଶୀ
ସଙ୍ଗେ ଯିବେ ଚଞ୍ଚଳ ଘୋରଯୁଦ୍ଧେ ।
ମୂଢେ ତଥା ମୂଢର ମାନପତ୍ରେ
ହର୍ଷଧ୍ୱନି ଗୁଞ୍ଜିତ ସତ୍ତ୍ର ମଧ୍ୟେ ॥

ନିଶ୍ଚକ୍ଷୁ,= ଅର; ମାର୍ଗଦର୍ଶୀ= ମାର୍ଗଦର୍ଶକ; ସଙ୍ଗେ= ସାଙ୍ଗରେ; ସତ୍ତ୍ର= ସଭାଗୃହ:

ଛନ୍ଦ: ଇନ୍ଦ୍ରବଜ୍ରା(ତୌ ଜଗୌ ଗଃ)
221/221/121+22
by LKabi 20250125 0125

## ସ୍ତ୍ରୀଲିଙ୍ଗପୁଂଲିଙ୍ଗ 062

ସ୍ତ୍ରୀଲିଙ୍ଗ *ବେଶ୍ୟା* ଗଠନାନୁସାରେ
ତେବେ କି ଭାବେ ପୁରୁଷେ ପ୍ରଯୁକ୍ତ ।
ଯେବେ କହେ *ଭୋଗ୍ୟନର* ପ୍ରବାଦେ
ସେ ହେବ କେତେ ଗ୍ରହଣୀୟ ମିତ୍ରେ ॥ 1

ନିର୍ଦ୍ୱନ୍ଦ ବୈକଳ୍ପିକ *ଦେହଜୀବୀ*
ସେ ମଧ୍ୟ *ସମ୍ଭୋଗ୍ୟନରେ* ସୁବୋଧ ।
ସମ୍ଭାବନେ ପୂରିତ ଶବ୍ଦକୋଶ
ନିଷ୍ପ୍ରାଣ କିମ୍ବା କହ ଶବ୍ଦଶାସ୍ତ୍ରୀ ॥ 2

ଶବ୍ଦାର୍ଥ:-
ପ୍ରବାଦ= mentioning; ଶବ୍ଦକୋଶ= containers of words; ନିଷ୍ପ୍ରାଣ= lifeless; ଶବ୍ଦଶାସ୍ତ୍ରୀ= philologist;

ବ୍ୟାଖ୍ୟା:-
ପୁରୁଷ ଶବ୍ଦ ପୁଂଲିଙ୍ଗ ବେଶ୍ୟା ସ୍ତ୍ରୀଲିଙ୍ଗ ତେଣୁ ପୁରୁଷ ବେଶ୍ୟା ଅଭିବ୍ୟକ୍ତି ତ୍ରୁଟିପୂର୍ଣ୍ଣ ଲାଗୁଛି । ଭୋଗ୍ୟନର ବା ଭୋଗ୍ୟପୁରୁଷ ସମ୍ଭୋଗ୍ୟପୁରୁଷ ବା ସମ୍ଭୋଗ୍ୟନର ଦେହଜୀବୀ ଆଦି ଅନେକ ବିକଳ୍ପ ଥାଇ ଭାଷାଜ୍ଞଗଣ ମୃତପ୍ରାୟ ନୀରବ କାହିଁକି?

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202501221745

## ପ୍ରାଣପ୍ରିୟାବନ୍ଦିନୀ 061

ରେ ରମ୍ୟା ତରୁଣୀ ଦିନେ ପଡିଯିବୁ
ପ୍ରେମାତୁରେ ବନ୍ଧନେ
ଏବେ ନୀରବତା ସମାଚରି ତୁ ଥା
ପ୍ରତ୍ୟଗ୍ର ସଂବେଦନେ ।
ତୋ ଉଦ୍ବେଗ ଦିନେ କଲେ ବିଚଳିତା
ମତ୍ତା ଥରେ ସଙ୍ଗିନୀ
ନିଶ୍ଚେ ବ୍ୟାକୁଳତାରୁ ହେବୁ ତୁହି ମୋ
ପ୍ରାଣପ୍ରିୟା ବନ୍ଦିନୀ ॥

ପ୍ରତ୍ୟଗ୍ର= ଅତି ନୂଆ; କନ୍ଦିନୀ= ବାଳିକା;

ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍ ସୂତ୍ର:
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
222/112/121/112••221/221+2

by LKabi 202501242158

## ଆତ୍ମୀୟତା 060

ଅଚରସଚରସୃଷ୍ଟି ମୋ ମାତୃକା
ଗଗନପବନ ଶବ୍ଦ ମୋ ଗୀତିକା ।
ଅନଳସଲିଳନିଶ୍ଚଳା ଚାନ୍ଦିନୀ
ତପନକିରଣ ମୋ ସଖାସଙ୍ଗିନୀ ॥ 1

ହୃଦୟ ସହିତ ମୋର ଆତ୍ମୀୟତା
ନରପଶୁଖଗବାରୁଣେ ବନ୍ଧୁତା ।
ତରୁତୃଣ ମିତ ମଞ୍ଜରୀ ମୋଦିନୀ
ମିଳନମଧୁର ଗୀତି ମୋ ନନ୍ଦିନୀ ॥ 2

ଗଗନପବନ, ଅନଳସଲିଳନିଶ୍ଚଳା= ଆକାଶ ବାୟୁ ଅଗ୍ନି ଜଳ ପୃଥ୍ୱୀ; ନିଶ୍ଚଳା= ପୃଥ୍ୱୀ; ଖଗ= ପକ୍ଷୀ; ବାରୁଣ= ଜଳଚର; ମଞ୍ଜରୀ= ଫୁଲ; ମୋଦୀ= ଯେ ମୋଦ (ଖୁସି) କରେ, ସ୍ତ୍ରୀ. ମୋଦିନୀ; ନନ୍ଦିନୀ= କନ୍ଯା, ଝିଅ:

ଛନ୍ଦ: ପ୍ରମୁଦିତବଦନା ନାମାନ୍ତରେ ମନ୍ଦାକିନୀ/ପ୍ରଭା
(ସ୍ୱରଶରବିରତିଶ୍ଚ ନୌରୌ ପ୍ରଭା)
111/111/2•12/212
by LKabi 202501242024

## ସମଦୁଃଖୀ 059

ଅସାମାନ୍ୟ କ୍ଲେଶେ ପତିତ ଜନ ଜାଣେ ଅପର ଘା
ବୁଝେ ସେ ଦୁଃଖୀ କେ ଅପର ସମଦୁଃଖେ ପଡିଥିଲେ ।
ପ୍ରିୟାଶ୍ଲେଷଚ୍ଛିନ୍ନ ଭ୍ରମର ରହି ବନ୍ଦୀ ସରସିଜେ
ଭିଜେ ଅନ୍ତର୍ବାଷ୍ପେ ରୁଦନ କରିବାରେ ଖଗସୁତା ॥

ଆଶ୍ଲେଷ= ଆଲିଙ୍ଗନ, ସଂସ୍ପର୍ଶ; ଅନ୍ତର୍ବାଷ୍ପ= କୋହ; ରୁଦନ= କ୍ରନ୍ଦନ; ଖଗସୁତା= ପକ୍ଷିକନ୍ୟା;

ଛନ୍ଦ: ଶିଖରିଣୀ ସୂତ୍ର:
(ରସୈରୁଦ୍ରୈଶ୍ଛିନ୍ନା ୟଯନସଭଲା ଗଃ)
122/222••111/112/211 + 12
by LKabi 202501241244

## ବାବା ଚତୁର୍ଧା 058

(ମୋଟ 4 ପ୍ରକାର ବାବାଜୀଙ୍କ କଥା)

କାନ୍ତାରୁ ବା ଅନ୍ତରୁ, ଦଣ୍ଡଭୀରୁ,
କେ ଟିଙ୍ଗଟିଙ୍ଗାରୁ ପଦେ କଥାରୁ ।
ବାବା ଚତୁର୍ଧା ପରିଦୃଷ୍ଟ ମର୍ତ୍ତ୍ୟେ
ଜାଣେ ଯିଏ ଅଜ୍ଞ ନୁହେଁ ଜମାରୁ ॥ 1

ବୈରାଗ୍ୟ କା ଅନ୍ତରଠି ପ୍ରବେଶେ (ଅନ୍ତରୁ
କାନ୍ତାରୁ ବାବା କିଛି ପେଟ ଆଶେ । (କାନ୍ତାରୁ
କାରା ଭୟେ ମାରକ ଛଦ୍ମବେଶେ (ମଣିଷମାରୁ
ଟିଙ୍ଗା ଘରେ ଗାଳି ଶୁଣି ପ୍ରବାସେ ॥2 (ଟିଙ୍ଗଟିଙ୍ଗାରୁ

ଅନ୍ତରୁ= ଆନ୍ତରିକତାରୁ; କାନ୍ତାରୁ= ଖାଦ୍ୟାଭାବରୁ; ମଣିଷମାରୁ= ଦଣ୍ଡନୀୟ ଅପରାଧରୁ; ଟିଙ୍ଗଟିଙ୍ଗାରୁ= କ୍ଷଣକୋପୀ ସ୍ୱଭାବରୁ; ମାରକ= ଘାତକ;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221 221 121 22
by LKabi 20241225

## ଉପୃତ୍ତି-ସଂଗ୍ରାମ 057

ଶୁକ୍ରାଣୁ ଲକ୍ଷେ ରହି ଗର୍ଭ ପାଶେ
ଯୁଦ୍ଧେ ଥିବେ ବ୍ୟାପୃତ ଜନ୍ମ ଆଶେ ।
ଡିମ୍ବାଣୁ ମଧ୍ୟେ ପଶିଲା ତ ଗୋଟେ
ବର୍ଜନ୍ତି ଅନ୍ୟେ ନିଜ ଯୁଦ୍ଧଭାଷା ॥
ବ୍ୟୁପୃତ୍ତି= ଜନ୍ମ;
ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202501221745

## ତଲ୍ଲୀନ ସ୍ଥିତି 056

ନୀରେ ଲୀନ ଯଥା ଅଦୃଶ୍ୟ ଲବଣେ ତା ଧର୍ମ, ସତ୍ତା ରହେ
ବ୍ରହ୍ମେ ଲୀନ ତଥା ଥିଲେ ବି ପୁରୁଷ ବ୍ୟକ୍ତିତ୍ୱରକ୍ଷା କରେ ।
ତେବେ ହେଁ ଲଭିବାକୁ ମୋକ୍ଷ ଭୟରେ ଦେହୀ ନୁହେଁ ଉଦ୍ୟମୀ
ସଂସାରାର୍ଣ୍ଣବ ଗର୍ଭରେ ବୁଡି ରହେ ଆଦୌ ନ ପାରେ କ୍ରମି ॥

ଧର୍ମସତ୍ତା= ଧର୍ମ ଓ ସ୍ଥିତି; ପୁରୁଷ, ଦେହୀ= ଆତ୍ମା;

ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍ ସୂତ୍ର:
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
222/112/121/112••221/221+2

by LKabi 202501232133

## ନିର୍ବୋଧାତ୍ମା 055

ନିର୍ବୋଧାତ୍ମା ଅତି ଚତୁରତା
ଯୋଗୁ ନିଃଶବ୍ଦ ଚାରେ
ନାରୀ ଗର୍ଭେ ପଶି ଲୁଚି ରହେ
ଦକ୍ଷ ସନ୍ତ୍ରାସିତୁଲ୍ୟ ।
ଭାଳେ ଚିତ୍ତେ ଲଭିବ ଭୁବନେ
ଉଚ୍ଛଳା ସ୍ନେହଧାରା
କାଳେ ଦେଖେ ବହୁତ ଲଦିଲା
ଶୃଙ୍ଖଳା ଦେହକାରା ॥

ନିର୍ବୋଧାତ୍ମା= ବୋକା ଆତ୍ମା; ଚାର= ଗତି;

ଛନ୍ଦ: ମନ୍ଦାକ୍ରାନ୍ତା
ସୂତ୍ର: ମନ୍ଦାକ୍ରାନ୍ତମ୍ବୁଧିରସନଗୈର୍ମୋ ଭନୌ ତୌ ଗଯୁଗ୍ମମ୍
222/2••11/111/2••21/221+22
by LKabi 202501231823

## ଆକୃତି 054

ସୁବ୍ୟାପ୍ତ ବୃତ୍ତ ସମ ବିସ୍ତୃତ ଏହି ଆତ୍ମା
ଅପ୍ରାପ୍ତ ଯା ପରିଧି କେନ୍ଦ୍ର ସମସ୍ତ ଦେଶେ ।
ଅତ୍ୟନ୍ତ ଖର୍ବ ରହି ପାରିବ ବିନ୍ଦୁ ମଧ୍ୟେ
ସୁବ୍ୟାପ୍ତ ପୀନ ତିମି ମାଛର ଦେହ ସାରା ॥

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22

**by LKabi 202501231123**

## ସଚ୍ଛିଦ୍ର-ବାଲ୍ଟି 053

ସଚ୍ଛିଦ୍ର ବାଲ୍ଟିରୁ ଯଥା ଜଳ ଚାଲି ଯାଏ
ଆତ୍ମା ତଥା ଗଳିତ ଦେହକୁ ବର୍ଜି ଥାଏ ।
ୱେଲ୍ଡିଂ କଲେ କିଛି ବଢେ କ୍ଷତ-ବାଲ୍ଟି ଲାଷ୍ଟିଂ
ଶାଲକ୍ୟରେ ବି ପରମାୟୁ ବଢେ ଇଦାନୀମ୍ ॥

**ଗଳିତ= waning, perished, melted; ୱେଲ୍ଡିଂ= welding; କ୍ଷତ= impaired, torn, wounded; ଲାଷ୍ଟିଂ= lasting; ଶାଲକ୍ୟ (ବା ଶଲ୍ୟଚକିତ୍ସା)= surgery; ଇଦାନୀମ୍= now, these days;**

**ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)**
**221/211/121/121+22**
**by LKabi 202501231123**

## କର୍ଣ୍ଣରଥ 052

ସଭିଙ୍କ ପାଠ୍ୟେ ଅଛି ସର୍ବବିଦ୍ୟା
ମନେ ରଖେ କେହି ଭୁଲେ କିଏ ବା ।
କପିଧ୍ୱଜାରୂଢ ମନେ ରଖେ ଯେ
ଭୁଲେ ଯିଏ କର୍ଣ୍ଣରଥେ ପ୍ରରୂଢ ॥

କପିଧ୍ୱଜାରୂଢ= ଅର୍ଜୁନଙ୍କ କପିଧ୍ୱଜରେ ଆରୋହୀ; କର୍ଣ୍ଣରଥ= କର୍ଣ୍ଣଙ୍କ ରଥ; ପ୍ରରୂଢ= ଚଢିଛି;

**ଛନ୍ଦ: ଉପେନ୍ଦ୍ରବଜ୍ରା (ଜତଜା ଗଯୁଗ୍ମମ୍)**
**121/221/121+22**
**by LKabi 202501231023**

## ଆଳୁ 051

ଛାତ୍ର: ମୁଁ ଦୀନ ଛାତ୍ର କରୁଣା ପ୍ରକାଶି
ଶାସ୍ତା ତୁମେ ନମ୍ବର ଦେବ ଢାଳି ।
ଗୁରୁ' ଆଦୌ ନୁହେଁ ନମ୍ବର କେଉଁ କାର୍ଯ୍ୟେ
ନେ ଆଳୁଟେ ପେଟକୁ ହେବ ସାହା ॥

ଶାସ୍ତା= ଶିକ୍ଷକ;
ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
LKabi 202501221745

## ଅବଦାନ 050

ଅମ୍ଭୋଧି ବାଣ୍ଟେ ମଣି ରତ୍ନ ମୁକ୍ତା
ଭୂଭୃତ୍ ଦିଏ ନୀର ନଦୀର ଗର୍ଭେ ।
ଶାଖୀ ଦିଏ ଖାଦ୍ୟ ବିଶୁଦ୍ଧ ବାୟୁ
ପ୍ରାଣୀ ଦିଏ ମା ପୃଥିବୀକୁ ବିଷ୍ଠା ।

ଅମ୍ଭୋଧି= ସମୁଦ୍ର; ଭୂଭୃତ୍= ପର୍ବତ; ଶାଖୀ= ଗଛ,;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202501210121

## ଦୂରତା 049

କେବେ ଦୁର୍ବଚନ ପ୍ରୟୋଗ ନ କରେ ହାସ୍ୟେ ବି ଦୁଃଖପ୍ରଦ
ଅନ୍ୟା କେ ଲଳନା ସହ ପ୍ରହସନେ ଶଂସାପ୍ରଲିପ୍ତା କଥା ।
ତୋ ଚିନ୍ତା କରି ମଗ୍ନ ମୋ ମନ ରହେ ସଶ୍ରଦ୍ଧ ତୋ ସମ୍ମଦ
ତେଜି କ୍ରୋଧ ବତା କି କାରଣ ଦିଶେ ମୋଠାରୁ ତୋ ଦୂରତା ।

ହାସ୍ୟ, ପ୍ରହସନ= ହସମଜା; ଶଂସାପ୍ରଲିପ୍ତ= ତେଲବୋଳା; ତୋ ସମ୍ମଦ= ତୋ ପ୍ରତି ହର୍ଷିତ;

ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
ମସ ଜ ସ ତ ତ +ଗୁ
222/112/121/112••221/221+2
by LKabi 202501211121

## ଜୟଯାତ୍ରା 048

ବିଶ୍ଳେଷଣେ ରହୁ ସମୁଜ୍ଜ୍ୱଳ ତୋର ଚଉ
ଆଦର୍ଶରେ ଅବିଚଳ ସ୍ଥିତି ହେଉ ତୋର ।
ଔଦାର୍ଯ୍ୟ ନିତ୍ୟ ରହୁ ପଥ୍ୟ ବିପଥ୍ୟ ଲାଭେ
ହେମନ୍ତ କୁଜ୍ଝଟି ସମା ସିତଘୋଷଯାତ୍ରା ॥

ପଥ୍ୟ= ସାମିଳାନ୍ୟ; ବିପଥ୍ୟ= ଅସାମାନ୍ୟ; ସିତ= ସରଳ;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by L. Kabi 202501202020

## କମନୀୟମୁଦ୍ରା 047

ଆହା କି ସୁନ୍ଦର ଦିଶେ ଯୁଗଳଙ୍କ ମୁଦ୍ରା
ସ୍ୱର୍ଗୀୟ ବନ୍ଧନର ଏ ମିଳନ ପ୍ରତିଜ୍ଞା ।
ଅତ୍ୟନ୍ତ କାଳ ଭିତରେ ଥିବ ସେ ଶରୀରେ
କଙ୍କାଳ ମାତ୍ର ଚଳିଲେ ତନୁ ବର୍ଜି ଦେହୀ ॥

ମୁଦ୍ରା= ଭଙ୍ଗୀ; ତନୁ= ଦେହ; ଦେହୀ= ଆତ୍ମା;

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22
by L. Kabi 202501202020

## ରାଜବଂଶ 046

ପୀଠେ ମଠେ ବିକଟ କର୍ବଟ-ବାଟ-ଘାଟେ
ଯେତେ ଅଛନ୍ତି ବସି ଯାଚନପାତ୍ରଧାରୀ ।
ସେ ମଧ୍ୟରେ ଥିବ ତ କେ ନର ଭାଗ୍ୟଦୋଷେ
ଯା ପୂର୍ବଜେ ଥିବ କିଏ ଶ୍ରୁତ ଦଣ୍ଡଧାରୀ ॥

ବିକଟ= ଯାହାର କଟ(ସପ, ମସିଣା) ନାହିଁ; ଯାଚନପାତ୍ର= ଭିକ୍ଷାପାତ୍ର; କର୍ବଟ= ସହର ବଜାର, ଗ୍ରାମ; ଶ୍ରୁତ= ଖ୍ୟାତ; ଦଣ୍ଡଧାରୀ= ରାଜା;
ଛନ୍ଦ ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22

by L. Kabi 202501201220

## ଗାଈର ଦୁଃଖ 045

ସର୍ବେ ଲଭନ୍ତୁ ସାଥୀ ବିଚାରି ଈଶ୍ୱର ରଖେ ସକଳଜୀବେ ।
ସଂଖ୍ୟା ସମାନ ମାଈ- ବୃଷଙ୍କୁ ତା ସୃଷ୍ଟିର ପ୍ରତିଟି ଜୀବେ ॥
ହେଲେ ମନୁଷ୍ୟ କି ଧୂର୍ତ୍ତ ଗାଈ ମାତା କହେ ଛଳ କରି ସିନା ।
ଅଣ୍ଡୀରକୁ ଖାସୁ କରେ, ଗାଈ ସାଥୀ ହରା ହୁଏ ଫଳତଃ ॥

ଛନ୍ଦ: ଗୀତି (ଆର୍ଯ୍ୟାବିଶେଷ) (ଅ.ସ ମା.)
by Lalatendu Kabi

*ଗଣବିଭାଜନ:-*
ସର୍ବେ / ଲଭନ୍ତୁ / ସାଥୀ /
ବିଚାରି / ଈଶ୍ୱର /ରଖେ ସ/କଳଜୀ/ବେ ।
ସଂଖ୍ୟା / ସମାନ / ମାଈ /
ବୃଷଙ୍କୁ/ ତା ସୃ/ଷ୍ଟିର ପ୍ର/ତିଟି ଜୀ/ବେ ॥
ହେଲେ / ମନୁଷ୍ୟ / କି ଧୂର୍ତ୍ତ /
ଗାଈ /ମାତା/ କହେ ଛ/ଳ କରି ସି/ନା ।
ଅଣ୍ଡୀ/ରକୁ ଖା/ସୁ କରେ /
ଗାଈ/ ସାଥୀ /ହରା ହୁ/ଏ ଫଳ/ତଃ ॥

ଛନ୍ଦ: ଗୀତି-ଆର୍ଯ୍ୟା (ଅ.ସ. ମା.)
by  Lalatendu Kabi

## ପ୍ରେମମୁଦ୍ରା                    044

ପ୍ରେମପ୍ରସଙ୍ଗେ କରି ଅଙ୍ଗ ମୁଦ୍ରା
ହେମ ତ୍ରିଭଙ୍ଗେ ବୁଡି ରଙ୍ଗରାସେ ।
ଯେବେ ଅକସ୍ମାତ୍ ଗଲ ଯୋଗନିଦ୍ରା
ନିଃସଙ୍ଗ ସନ୍ଧ୍ୟା କଟିଲା ଉଦାସେ ‖ 1

ଏ ପ୍ରେମପକ୍ଷୀ ବନବୃକ୍ଷ ଡାଳେ
ଶୋକାର୍ତ୍ତଚିତ୍ତେ ସ୍ମୃତିଗୀତ ଗାଏ ।
ସେ ବୃକ୍ଷମାନେ ବୁଲି ଦେଖ ଵାରେ
ବକ୍ଷେ ଯଦି ପ୍ରେମର ଚିହ୍ନ ଥାଏ ‖ 2

ସେ ଶୈଳରାଣିଙ୍କର ବେଷ୍ଟନୀରେ
ସେ ଶ୍ୟାମ ଶଷ୍ପାଞ୍ଚଳ ମଧ୍ୟଭାଗେ  ।
ଅଦ୍ୟାପି ଯେ ପ୍ରେମର ଆମ ସାକ୍ଷୀ
ସେ ଚଞ୍ଚରୀ ଚର୍ଚ୍ଚିତ ରଙ୍ଗରାଗେ ‖ 3

**ଛନ୍ଦ:** ଇନ୍ଦ୍ରବଜ୍ରା        **(ତୌ ଜଗୌ ଗଃ)**
**221/221/121+22**

**by  L Kabi  202501171835**

## ପାଲଟା-ବୃକ୍ଷ-ଶାଖା043

ତରୁବର ଉପବୃତ୍ତ		ପ୍ରାୟ ସଂସାର ସଜ୍ଜା
ଉପରଦିଗକୁ ଥାଏ		ଐକ୍ୟ, ନିମ୍ନେ ପ୍ରପଞ୍ଚ ।
ପୁରୁଷ କରୁଛି ଲୀଳା		ପକ୍ଷିତୁଲ୍ୟ ପ୍ରଶାଖେ
ଉଡୁଛି ବହୁତ ଦୂରେ		ପଞ୍ଜରେ ନ ପ୍ରବେଶେ ॥

ଉପବୃତ୍ତ ତରୁବର= ଓଲଟା ବୃକ୍ଷ; ପ୍ରପଞ୍ଚ= ବୈବିଧ୍ୟ; ପୁରୁଷ= ଜୀବାତ୍ମା; ଲୀଳା= ଖେଳ;
ଛନ୍ଦ:	ମାଳିନୀ (ନନମୟୟ)
	111/111/22•2/122/122
by	LKabi	202501172047

## ଅପତର୍କ		042

ବିକ୍ଷିପ୍ତ ଭାବେ ରଚି  ଶାସ୍ତ୍ରଲେଖା
ଗୂଢାର୍ଥ ମଧ୍ୟେ ନ କରି ପ୍ରବେଶ ।
ଉଦ୍ଧାର ତର୍କେ କରିଥିନ୍ତି ବାଣୀ
ସେ ଶାସ୍ତ୍ରସନ୍ତାପନପାପଭାଗୀ ॥

ସନ୍ତାପନ= ଉତ୍ପୀଡନ;

ଛନ୍ଦ:	ଇନ୍ଦ୍ରବଜ୍ରା		(ତୌ ଜଗୌ ଗଃ)
	221/221/121+22

by	LKabi	202501171647

## ଶାସ୍ତ୍ରଘୋଷା		041

ହିଂସା  ଘୃଣା ଦ୍ୱେଷଠୁ ନିତ୍ୟ ଦୂରେ
ସ୍ୱାଧ୍ୟାୟ ସେବା ବ୍ରତ ସର୍ବଜୀବେ ।
ସେ ସଜ୍ଜନ ଜ୍ଞାନିଜନେ ସୁମାନ୍ୟ
ଅଜ୍ଞାନ ଯେ କେବଳ ପାଠ ଘୋଷେ ॥

ଛନ୍ଦ:	ଇନ୍ଦ୍ରବଜ୍ରା		(ତୌ ଜଗୌ ଗଃ)

**221/221/121+22**

**by LKabi 202501171701**

# ମୋହିନୀ ନାୟିକା **040**

ଅଚିହ୍ନା ନିଶାନ୍ତେ ସାଜିଲ ପ୍ରେମିକା
ମିଠା ପ୍ରଶ୍ନଭାରେ ମୋହିନୀ ନାୟିକା ।
ପଥେ ପାନ୍ଥଶାଳେ ମୂର୍ଚ୍ଛନା ଶାଳିକା
କିଏ ପ୍ରଶ୍ନକନ୍ୟା ସ୍ରଗ୍ଧରା ବାଳିକା ॥ 1

ଅତି କ୍ଳାନ୍ତି ଶେଷେ ଶର୍ବରୀସଞ୍ଜନେ
ତୁମେ କେ ଦ୍ୟୁବାଳା ଉଡ୍ଡଳା ସିଞ୍ଚନେ ।
ପରିଶ୍ରାନ୍ତି କାଳେ ହେଲ ମୋ ମାନସୀ
ନିରାଶା-ମରୁପ୍ରଷ୍ଠେ ବୃଥା ସାରସୀ ॥ 2

କ୍ଷଣେ ଅନ୍ତରେ ହେଲେ ପ୍ରଭା ଭୂତଳେ
ଯିବା ସତ୍ୟ ମୋ ଅଜ୍ଞାତ ଲକ୍ଷ୍ୟସ୍ଥଳେ ।
ତୁମେ ମୋର ସଙ୍ଗେ ସାଜି ମୋ ବନ୍ଦିନୀ
ସତେ ହେବ ସାଥୀ ପଲ୍ଲିକା ନନ୍ଦିନି ॥ 3

**ନିଶାନ୍ତ=** ବସତି; **ଶାଳିକା=** ବଂଶୀ, ହାଟ, ପ୍ରକୋଷ୍ଠ; **ସ୍ରଗ୍ଧର=** ଯେ ମାଳା (ସ୍ରକ୍) ଧାରଣ କରିଥାଏ, *ସ୍ତ୍ରୀ.* **ସ୍ରଗ୍ଧରା; ଶର୍ବରୀ=** ରାତ୍ରି; **ଦ୍ୟୁବାଳା=** ସ୍ୱର୍ଗକନ୍ୟା; **ଉଡ୍‌ଡଳା=** ଅତରବିଶେଷ; **ନନ୍ଦିନୀ=** ଝିଅ, *ସମ୍ବୋଧନେ.* ନିନ୍ଦିନି;

**ଛନ୍ଦ:** ସରୋଜାବଳୀ (ୟୟରର)
**122/122/212/212**
**by L Kabi 202501170517**

## ଭାରତ 039

ଯେଉଁ ଦେଶେ ଝରେ ସିନ୍ଧୁ ଗଙ୍ଗା ନଦୀ
ମସ୍ତକେ ପର୍ବତ ଶ୍ରୀପଦେ ତୋୟଧି ।
ତାପ୍ତି ଗୋଦାବରୀ ନର୍ମଦା କ୍ଷାଳିତ
ଭୂତଳେ ଭାତ ସମ୍ପୂଜ୍ୟ ମୋ ଭାରତ ॥ 1

ଅଙ୍କ-ବିଜ୍ଞାନ-ଭୂଗୋଳ-ରୁଗ୍‌ଭେଷଜ-
ଦର୍ଶନ-ବ୍ରହ୍ମତତ୍ତ୍ୱେ ଭରା ଦିଗ୍ଗଜ ।
ସର୍ବଥା ଭ୍ରାତୃଭାବେ ସଦା ଫୁଲ୍ଲିତ
ଭୂତଳେ ଭାତ ସମ୍ପୂଜ୍ୟ ମୋ ଭାରତ ॥ 2

ଧର୍ମ ବା ସମ୍ପ୍ରଦାୟେ କି ଭାଷାଭିଦା
ଯୋଗୁ ସର୍ଜେ ଅସୂୟା ଯିଏ ସର୍ବଦା
ହେଉ ନେତା କି ସେ ଥାଉ ବା ଭୂଭୃତ
ହେବ ସେ ଶୀଘ୍ର ମୋ ଭାରତେ ଦଣ୍ଡିତ ॥ 3

ତୋୟଧି= ସମୁଦ୍ର; ରୁଗ୍‌ଭେଷଜ= ଔଷଧଶାସ୍ତ୍ର;
ଦିଗ୍ଗଜ= ପଣ୍ଡିତ; ଭିଦା= ଭେଦ; ଅସୂୟା= ଘୃଣା;
ଭୂଭୃତ= ରାଜା;

ଛନ୍ଦ: ସ୍ରଗ୍ୱିଣୀ (ରଶ୍ଚତୁର୍ଭିର୍ଯୁତା)
212/212/212/212
by L Kabi 20250116 2116

## ଆସ ବର୍ଷା 038

ଆସ ବର୍ଷା ଧରାପୃଷ୍ଠ ରୌଦ୍ରେ ଜଳେ
ବୃକ୍ଷଶାଖା ଲତା ଗୁଳ୍ମ ଦାବାନଳେ ।
କୀଟ ଝିଲ୍ଲୀକ ମଣ୍ଡୂକ ଦଂଷ୍ଟ୍ରୀ ନରେ
ଜନ୍ତୁ ପକ୍ଷୀକୁଳେ ଆତପେ କାତରେ । 1

ଦାବ= ବନ; ଝିଲ୍ଲୀକ= ଝିଣ୍ଟିକାଦି; ଦଂଷ୍ଟ୍ରୀ= ସାପ;

ଢାଳି ଯା ଦିବ୍ୟତା ଯା ମିଳେ ପୁଷ୍କରେ
ପୂର୍ଣ୍ଣତା ଆସୁ ଏ ପୁଷ୍କରେ ପୁଷ୍କରେ ।
ରମ୍ୟତା ବର୍ଷୁ ରତ୍ନପ୍ରଭା ଅଙ୍ଗନେ
ପ୍ରାଣଧାରୀ ଜନେ ଥାନ୍ତୁ ଆନନ୍ଦନେ । 2

ପୁଷ୍କର= (କ୍ରମଶଃ) ସ୍ୱର୍ଗ ପୁଷ୍କରିଣୀ ଜଳ; ରତ୍ନପ୍ରଭା= ପୃଥିବୀ;

ତୁମ୍ଭ ଅଭ୍ୟାଗମେ ହର୍ଷିତା ବାସୁରା
ହର୍ଷୁଳା ଔସଷୀ ତାମସୀ ମସ୍ୱରା
ହର୍ଷିତା ଶ୍ୟାମଳା ମୃତ୍ତିକା ମସ୍ୱରା
ବର୍ହିଣେ ବର୍ହିଣୀ ବାରଣେ ବାସୁରା । 3

ବାସୁରା= ପୃଥିବୀ; ହର୍ଷୁଳା= ଆନନ୍ଦିତା; ଔସଷୀ= ଉଷା; ତାମସୀ= ରାତ୍ରି; ମସ୍ୱରା= ଆନନ୍ଦିତା; ମୃତ୍ତିକା= ପୃଥିବୀ, ମାଟି; ମସ୍ୱରା= ମଶାମାଛି; ବର୍ହିଣୀ= ମୟୂରୀ; ବାସୁରା= ହସ୍ତିନୀ; ବର୍ହିଣୀ ବର୍ହିଣେ, ବାରଣେ ବାସୁରା= ମୟୂରୀ ମୟୂର ପାଖରେ, ହାତୀ ପାଖରେ ହସ୍ତିନୀ;

ଛନ୍ଦ: ସ୍ରଗ୍ୱିଣୀ (ରଶ୍ଚତୁର୍ଭିର୍ୟୁତା ସ୍ରଗ୍ୱିଣୀ ସମ୍ମତା)
212/212/212/212
by LKabi 202305251615

## ଯୋଜନୀ ବା ଷ୍ଟେପ୍ଲାର୍ 037

ବନ୍ଧୁତା ରକ୍ଷିତା ଯୋଜନୀ ଯୋଜନେ
ଜାଲସଂଳାପ ବାର୍ତ୍ତା ହିଁ ତା ସୂଚିକା
ଭିନ୍ନ ପୃଷ୍ଠା ଯଥା ମୁକ୍ତ ତା ଛେଦନେ
ପତ୍ର ବାର୍ତ୍ତା ଚଳା ସେହି ତୋ ଭୂମିକା ।

୧- ବନ୍ଧୁତା ରହିଛି ଷ୍ଟେପ୍ଲାର୍ ଯୋଡେଇରେ; ୨- ନେଟ୍ ଚାଟିଂ, ବାର୍ତ୍ତାଳାପ ତା କଣ୍ଟା ବା ପିନ୍; ୩- ପିନ୍ ଭାଙ୍ଗିଲେ ପୃଷ୍ଠା ପରି ବନ୍ଧୁତା ଅଲଗେଇ ଯିବ;୪- (ତେଣୁ) ତୁ ଚାଟ, କଲ୍ କରୁ ଥା, ଏଇ ତୋ ଡ୍ୟୁଟୀ;

ଛନ୍ଦଛନ୍ଦ: ସ୍ରଗ୍ୱିଣୀ (ରଶ୍ଚତୁର୍ଭିର୍ୟୁତା ସ୍ରଗ୍ୱିଣୀ ସମ୍ମତା)
212/212/212/212
by LKabi 202208231950

## ସଂସାର 036

ସଂସାର ଭାର୍ଯ୍ୟା ପତି ପୁତ୍ର କନ୍ୟା
ଆତ୍ମୀୟବର୍ଗେ ଯଦି ସର୍ବମିଥ୍ୟା ।
ତେବେ ମୁଁ କାହା ସୁତ ବୋଲି ମିଥ୍ୟା
ମୋତେ ତୁମ ଜ୍ଞାନ ଦିଆ ବି ମିଥ୍ୟା ॥

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by LKabi 202501152215

## ଜଡ଼ 035

ପୂରିତା କୁଣ୍ଡିକା ଶବ୍ଦହୀନା ସ୍ଥିରା
ଅର୍ଦ୍ଧପୂର୍ଣ୍ଣା ରହେ ଭୂରି ଶବ୍ଦେ ଭରା ।
ଜ୍ଞାନବାନ୍ ସ୍ୱଳ୍ପଭାଷୀ ବରେ ମୌନତା
ମୂଢ଼ ଜନ୍ତେ ନ ଜାଣେ ନିଜ ନ୍ୟୂନତା ॥

ଛନ୍ଦ: ସ୍ରଗ୍ୱିଣୀ (ରଶ୍ଚତୁର୍ଭିର୍ଯୁତା ସ୍ରଗ୍ୱିଣୀ ସମ୍ମତା)
212/212212/212
by L Kabi 202501151815

## ମୋହମାୟା 034

ସ୍ତ୍ରୀପୁତ୍ରକନ୍ୟା ଯଦି ମୋହ ମାୟା
ସଂସାର ମିଥ୍ୟା ପରିବାର ମିଥ୍ୟା ।
ତେବେ ତ ମିଥ୍ୟା ପତି ତାତ ମାତା
ଏ ସର୍ବମିଥ୍ୟା ଭଗବାନ୍ କି ଭାବେ ॥

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ,)
221/221/121+22

by L Kabi 202501151223

## ସମ୍ପ୍ରେଷପତ୍ର 033

ହେ ଟ୍ରମ୍ପ୍ ଡକାଇଲ ତୁମେ ବହୁ ରାଷ୍ଟ୍ରନେତା
ତତ୍ରାପି ବିଶ୍ୱଗୁରୁଟାକୁ ନ ଦେଲ ଡାକି ।
ସମ୍ପ୍ରେଷ ସଂଗ୍ରହ ନିମିତ୍ତ ଗଲା ବି ଦୂତ
ସେ ମଧ୍ୟ ନାସ୍ତି ଶୁଣିଲା କି କଠୋର ତୁମ୍ଭେ ॥

ଟ୍ରମ୍ପ= Donald Trump; ବିଶ୍ୱଗୁରୁ= ଆଛି ଜଣେ ଆମର;
ତତ୍ରାପି= ତଥାପି; ସମ୍ପ୍ରେଷ= ନିମନ୍ତ୍ରଣ;

ଛନ୍ଦ: ବସନ୍ତତିଳକା ( ତଭଜା ଜଗୌ ଗଃ)
221/211/121/121+22
by L Kabi 202501143014

## ପ୍ରମାଦ 032

ଅତ୍ର ସ୍ୱରବ୍ୟଞ୍ଜନରେଫମାତ୍ରା
ସଂସ୍ଥାପନେ ଯଦ୍ୟପି ଦୋଷ ଥାଏ ।
ସଂଶୁଦ୍ଧ ମୋ ପାଠକବୃନ୍ଦ ତାହା
ବିମ୍ଳାନ ଚିତ୍ତେ ପଢ ଶୁଦ୍ଧ ଭାବେ ॥

ଅଥବା
ଏ ପୁସ୍ତକେ ସନ୍ଧି କି ବା ସମାସେ
ସଂଯୁକ୍ତ ବା ମୁକ୍ତକ ବର୍ଣ୍ଣଯୋଗେ ।
ଯେବେ ମିଳେ ବିଚ୍ୟୁତି ମୋ ପ୍ରମାଦେ
ସଂଶୁଦ୍ଧ ଭଦ୍ରେ କ୍ଷମ ଭବ୍ୟ ଭାବେ ॥

**ଛନ୍ଦ:  ଇନ୍ଦ୍ରବଜ୍ରା  (ତୌ ଜଗୌ ଗଃ)**
**221/221/121+22**
**by  L Kabi  202501141014**

## ଅନୁଦ୍‌ବିଗ୍ନଚିତ୍ତ 031

ଶ୍ରଦ୍ଧା ଜଣେ କେ ନ କରୁ ସ୍ୱଦେଶେ
ସମ୍ମାନ ଦୁର୍ଲଭ୍ୟ ଥିଲେ ପୁରୀଷେ୍ୟ ।
ଯା ଚିତ୍ତ ବାରେ ନ ହୁଏ ବିଷଣ୍ଣ
ସନ୍ନ୍ୟସ୍ତ ବା ସେ ହତ ବୁଦ୍ଧିନାଶେ ॥

ଛନ୍ଦ: **ଇନ୍ଦ୍ରବଜ୍ରା** (ତୌ ଜଗୌ ଗଃ)
221/221/121+22
by **L Kabi  202501132213**

.

## ବଡ କି କୁନି ଛୁଆ 030

ମାତା ଦେ ଖୋଇ ମୋତେ
ତୁ କି ଟିକି ଶିଶୁଟେ ଶୀଘ୍ର ତୋ ହାତରେ ଖା
ଏବେ ଜାଳେ ମୁଁ ଚୁଲ୍ଲୀ
ରହ ତୁ କଟି ଛୁଆ  ହାତ ସର୍ବତ୍ର ଦେ ନା ।
ମାତା ଦେ ଶୋଇ ମୋତେ
ବହୁତ ବଡ ପିଲା  ହେଲୁ ଯା ଶୋ ତୁ ଏକା
ଜାଣେ ତେବେ ବତା ମା
ବଡ କି ମୁଁ ବକଟେ ପୁତ୍ର ମୋ କୋଳରେ ଥା ॥

**ଛନ୍ଦ:  ସ୍ରଗ୍ଧରା  ସୂତ୍ର:**
(ମ୍ରଭ୍ନୈର୍ୟାଣାଂ ତ୍ରୟେଣ ତ୍ରିମୁନିୟତିୟୁତା)
ମରଭନ ୟୟୟ
**222/212/2••11/111/12••2/122/122**

by **L Kabi  202501131212**

**ଅର୍ଥାତ :-**

ପୁଅ: ମାତା ଦେ ଖୋଇ ମୋତେ
ମା: ତୁ କି ଟିକି ଶିଶୁଟେ ଶୀଘ୍ର ତୋ ହାତରେ ଖା

ପୁଅ: ଏବେ ଜାଳେ ମୁଁ ଚୁଲ୍ଲୀ
ମା: ରହ ତୁ କଟି ଛୁଆ ହାତ ସର୍ବତ୍ର ଦେ ନା ।

ପୁଅ: ମାତା ଦେ ଶୋଇ ମୋତେ
ମା: ବହୁତ ବଡ ପିଲା ହେଲୁ ଯା ଶୋ ତୁ ଏକା

ପୁଅ: ଜାଣେ ତେବେ ବତା ମା ବଡ କି ମୁଁ ବକଟେ
ମା: ପୁତ୍ର ମୋ କୋଳରେ ଥା ॥

## ଅଜ୍ଞଗୁରୁ 029

ଦୁର୍ବୋଧ ଶବ୍ଦ ସହ ବାକ୍ୟ କହନ୍ତି ଲୋକେ
ଯା ବୋଧ ତାର ବି ରହେ ଅପରେ ବିରୋଧ ।
ନୈରର୍ଥ୍ୟପୂର୍ଣ୍ଣ ଗଢି ନାଟ୍ୟର ଖଣ୍ଡବାକ୍ୟ
ଅଜ୍ଞାନରେ ରହି ନିଜେ ବିତରନ୍ତି ବିଦ୍ୟା ॥

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଘଃ)
221/211/121/121+22
by **L Kabi 202501121912**

## ସୁଗୁଣ 028

ଗୁଣବାନ୍ ନର ନର କେବଳ
ନର ବାସ୍ତବ ପୂର୍ଣ୍ଣ ବାନର ମହୀରେ ।
ଗୁଣିନୀ ନାରୀ ନାରୀ
କେବଳ ନାରୀ ନିରୀକ୍ଷ ଘରେ ॥

ଛନ୍ଦ:  ଆର୍ଯ୍ୟା (ବିଷମ ମାତ୍ରିକ)
ମାତ୍ରା 12+18 (30) ଓ 12+15 (2) ଓ
... ଓ ଅନ୍ୟାନ୍ୟ ନିୟମ ।

**ଗୁଣବାନ୍...**= ଗୁଣୀ ନର ପ୍ରକୃତ ନର, କେବଳ ନର ବାନରତୁଲ୍ୟ; **ଗୁଣିନୀ...**= ଗୁଣବତୀ ନାରୀ ପ୍ରକୃତ ନଖରୀ, କେବଳ ନାରୀ ଘରେ ପଡିଥିବା ଫାଳହୀନ ଲଙ୍ଗଳ ପରି; **ନିରୀଷ**= ଫାଳ ଲାଗି ନ ଥିବା ଲଙ୍ଗଳ;

by **LK 202501121254**

## କାବ୍ୟଭାଷା 027

ସର୍ବେ ନିଅନ୍ତୁ ସୁକବିଙ୍କଠୁ କାବ୍ୟଭାଷା
ତାହାଙ୍କ ଶବ୍ଦର ବିତାନ ତଥାପି ପୂର୍ଣ୍ଣ ।
ମୁକ୍ତା ଯଥେଚ୍ଛ ନର ତୋଳୁଛି ସିନ୍ଧୁ ଗର୍ଭୁ
କେବେ ସମୁଦ୍ର ନ ହୁଏ ମଣିରତ୍ନଶୂନ୍ୟ ॥

**ବିତାନ**= କୁଢ, ଗଦା;
।
ଛନ୍ଦ:  **ବସନ୍ତତିଳକା**  (ତଭଜା ଜଗୌ ଗଃ)
**221/211/121/121+22**
by **LKabi 202501121012**

## ନୃପର ପ୍ରଶସ୍ତି 026

ରାଜାର ପାଶ ନ ଥିଲେ ଗୁଣିକାବ୍ୟକର୍ତ୍ତା
ତାହାର କୀର୍ତ୍ତି ଭୁବନେ ନ ଲଭେ ପ୍ରଶସ୍ତି ।
ରାଜା ଅନେକ ପୃଥିବୀରୁ ଗଲେଣି ଦୂରେ
ଅତ୍ୟଳ୍ପ ନାମ ତହିଁ ମଧ୍ୟରୁ ଲୋକଚିତ୍ତେ ॥

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
**221/211/121/121+22**
by **L Kabi** **202501120925**

## ପଦଶକ୍ତି 025

ଲଙ୍କେଶ କୌରବସହୋଦର ନିନ୍ଦ୍ୟ ହେଲେ
ଶ୍ରୀରାମ କୃଷ୍ଣ ଲଭିଲେ ନମନୀୟ ଆଖ୍ୟା ।
ବିସ୍ତୀର୍ଣ୍ଣ ଲୋଭନ କବିଙ୍କ ପଦ ପ୍ରଭାବେ
ତୁମ୍ଭେ କବିଙ୍କୁ ରଖ ତୋଷି ବିବୁଦ୍ଧ ରାଜନ୍ ॥

**ପଦଶକ୍ତି**= stanza-power; **ଲଙ୍କେଶ**= ରାବଣ; **ସହୋଦର**= ଭାଇ; **ନମନୀୟ**= ପୂଜନୀୟ; **ଲୋଭନ**= ରୁଚିକର; **ପଦ**= କବିତାର ପଦ; **ବିବୁଦ୍ଧ**= ବୁଦ୍ଧିମାନ୍;

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
221/211/121/121+22
by **LKabi** **202501120651**

## ଅନର୍ଥସାହିତ୍ୟ 024

ଅନାର୍ଯ୍ୟ ଲୋକେ ସହଜ ସ୍ୱଭାବତଃ
କୁକର୍ମ ଚିନ୍ତା କରୁ ଥାନ୍ତି ଗୋପନେ ।
କୁକାବ୍ୟକର୍ତ୍ତା ପୁଣି ସେହି ହୋମରେ
ଅନର୍ଥସାହିତ୍ୟ ଦିଏ ଘୃତାର୍ପଣେ ॥

ଛନ୍ଦ: **ବଂଶସ୍ଥ**
ନାମାନ୍ତରେ **ବଂଶସ୍ଥବିଳମ୍** (ଜତୌ ଜରୌ)
121/221/121/212
by **L Kabi** **202501111751**

## ଯତ୍ନଶୀଳା କବିତା   023

କି ବ୍ରହ୍ମବିଦ୍ୟା ଯଶ ରାଜ୍ୟଲକ୍ଷ୍ମୀ
କେବେ ନ ହେବେ କବିତାର ତୁଲ୍ୟ ।
କନ୍ୟା ସମା ସେ ରହି ସନ୍ନିଧାନେ
ଆନନ୍ଦଦାନେ ଅତି ଯତ୍ନଶୀଳା ॥

ଛନ୍ଦ:   ଇନ୍ଦ୍ରବଜ୍ରା  (ତୌ ଜଗୌ ଗଃ)
221/221/121+22
**LK 202501110111**

## ସଂଶୁଦ୍ଧ ଭାଷା   022

ବର୍ଣ୍ଣାୟୋଜନ ଶୁଦ୍ଧି ପଦ୍ୟରଚନେ
କର୍ତ୍ତା କ୍ରିୟା ଲିଙ୍ଗରେ
ପୂରା ଦୁର୍ବଳ ଉତ୍କଳେ କବିକୁଳ
ଜ୍ଞାନୀର ଛଦ୍ମାମ୍ବରେ ।
ଦୋଷଭ୍ରାନ୍ତି ଯିଏ ବତାଇବ ମଳା
ଏହାଙ୍କ ନିନ୍ଦାରବେ
ସାହିତ୍ୟେ କହୁଛନ୍ତି ବର୍ଜିତ କଥା
ସଂଶୁଦ୍ଧ ଭାଷା ଲବେ ॥

ଛନ୍ଦ:   ଶାର୍ଦ୍ଦୂଳବିକ୍ରୀଡିତମ
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
222/112/121/112••221221+2
by   **L Kabi   202501101515**

## ହେମନ୍ତ କାଳେ ଯଥା 021

ତୋ ଆୟୁ କ୍ରମଶଃ ବଢୁ ପ୍ରିୟତମେ ହେମନ୍ତଭୌତୀ ଯଥା
ବର୍ଦ୍ଧିଷ୍ଣୁ ପ୍ରିୟତା ମିଳୁ ପ୍ରତିପୁରେ ହେମନ୍ତଖଦ୍ୟୋତବତ୍ ।
ପାପିଷ୍ଠଙ୍କର ଭୀତିବର୍ଦ୍ଧନ ତୁ ହେ ହେମନ୍ତବାରୀ ଯଥା
ବିଦ୍ୱେଷୀ ତବ ନାଶ ଯାନ୍ତୁ ସକଳେ ହେମନ୍ତକାନ୍ତାରବତ୍ ॥

**ଭୌତୀ**= ରାତ୍ରି; **ଖଦ୍ୟୋତ**= ସୂର୍ଯ୍ୟ; **ବାରୀ**= ଜଳ; **ବିଦ୍ୱେଷୀ**= ଶତ୍ରୁ; **କାନ୍ତାର**= ପଦ୍ମ;

ଛନ୍ଦ: **ଶାର୍ଦ୍ଦୂଳବିକ୍ରୀଡିତମ୍**
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
222/112/121/112••221/221+2

by **ଲଲାଟେନ୍ଦୁ କବି** **202501101010**

## ନୀରେ ବାହୁକତରୁଣୀ 020

ବକ୍ଷୋଜେ ସଲିଳତରଙ୍ଗ ସର୍ଜି ଯାନ୍ତେ
ଝଞ୍ଝାବାତ କି ଉଠିଲା ଶିଳା ପ୍ରଘାତେ ।
ବାତ୍ୟାରେ ଥରଥର ପଲ୍ଲବ ପ୍ରମାଣେ
ତନ୍ୱୀ ହସ୍ତ କରି ଗଲା ଲତାନ୍ତ ଯେହ୍ନେ ॥

**ବାହୁକ**= ସନ୍ତରଣକାରୀ; **ବକ୍ଷୋଜ**= କୁଚ, ସ୍ତନ; **ଝଞ୍ଝାବାତ**= ସାମୁଦ୍ରିକ ଝଡ; **ପଲ୍ଲବ**= ପତ୍ର; **ତନ୍ୱୀ**= ପତଳୀ; **ଲତାନ୍ତ**= ଲତାର ଅଗ୍ରଭାଗ;

ବା

କାସାରେ କୁଚ ଝୁଲଣେ ତରଙ୍ଗ ଲାଗେ

ଝଞ୍ଝାବାତ କି ଉପଳପ୍ରହାର ଯୋଗେ ।

ଦୋଳେ ତା କରତଳ ବର୍ହବତ୍ ସମୀରେ

ତନ୍ୱୀ ସନ୍ତରୁଛି ଲତା ଯଥା ନନାଗ୍ରେ ॥

**ବାହୁକ**= ସନ୍ତରଣକାରୀ; **କାସାର**= ହ୍ରଦ, ପୋଖରୀ; **କୁଚଝୁଲଣ**= ସ୍ତନ ଦୋଳାୟମାନ୍ ହେବା; **ଝଞ୍ଝାବାତ**= ସାମୁଦ୍ରିକ ଝଡ; **ଉପଳପ୍ରହାର**= ପଥର ଫୋପଡା; **ବର୍ହବତ୍**= ମୟୂର ଆଦିର ପୁଚ୍ଛ ବା ଗଛର ପତ୍ର ପରି;

ଛନ୍ଦ: ପ୍ରହର୍ଷିଣୀ 13/
222•••111/121/212+2
by **L. Kabi** **202501092129**

## ଧର୍ମାନ୍ଧତ୍ୱ 019

ମୋ କନ୍ୟା ତନୟଗଣେ ରହନ୍ତୁ ତାପେ

ଧର୍ମାନ୍ଧତ୍ୱର ଜୟ ବାଜଣା ବଜା ରେ!

ଦୂରେ ସେ ନରକପୁରେ କୁକର୍ମ ତାପେ

ଯାହା ହେବ ଭୁଲି ତୁ ଭାଟ ହେଇ ଯା ରେ ॥

ଛନ୍ଦ: ପ୍ରହର୍ଷିଣୀ
222••111/121/212+2
**by** **L Kabi**

## ନିଷ୍ଫଳ ଗର୍ଜନ 018

କୁକ୍କୁର ବୁକ୍କନକାରୀ କରେ ନା ଚର୍ବଣ

ବାରିଦ ଗର୍ଜନକାରୀ କରେ ନା ବର୍ଷଣ ।

ଦାମ୍ଭିକ ଭାଷଣଚାରୀ ସୁକର୍ମେ ବାରଣ

ତାଙ୍କ ଭୟେ ରଣକାରୀ ନ ଛାଡେ ତା ରଣ ॥

**ବୃକ୍କନ**= ଭୁକିବା; **ଚର୍ବଣ**= ଚୋବେଇବା, କାମୁଡିବା; **ବାରିଦ**= ମେଘ; **ଦାମ୍ଭିକ**= ଟେମ୍ପାରିଆ; **ବାରଣ**= କୁଣ୍ଠିତ; **ରଣକାରୀ**= ଯୋଦ୍ଧା:

ଛନ୍ଦ:	14/4407
	211/211/22••1/222+12
by	**LKabi 202501091209**

## ଜର୍ଜରା 017

ସଜ୍ଜନେ ସକଳ ଭୋଗବସ୍ଥଳେ

ବ୍ୟଞ୍ଜନା ବିମଳ ମନ୍ତ୍ର ଯା ଗଳେ ।

ଆଜ ସେ ଅଟଳ ସାଧନା ବଳେ

ଜର୍ଜରା ସଫଳତା ପଥେ ଚଳେ ॥

**X** ଜ **X XX** ଳ **XXXX** ଳେ

**ବ୍ୟଞ୍ଜନା**= ପ୍ରସ୍ତାବନା, suggestion;
**ଜର୍ଜରା**= ବୁଢୀ;

ଛନ୍ଦ:	ରଥୋଦ୍ଧତା (ରାପୃରୈର୍ନରଲଗାଃ....)
	212/111/212+12
by	**L Kabi 202501091209**

## ହିଂସ୍ର ସ୍ୱଭାବ 016

ଆସ୍ଥା ବିଭିନ୍ନ ରଖି ମଧ୍ୟ ଉଦାର ଲୋକେ

ଏକତ୍ର ବାସ କରିବେ ସହଜ ସ୍ୱଭାବେ ।

ନାନା କଠୋର ମତପୋଷକ ରୁଣ୍ଡ ହେଲେ

ରକ୍ତାତ ଯୁଦ୍ଧ କରି ନାଶ ଯିବେ ଅକାଳେ ॥

(**alternatively**
**line-3 can be read as:**
*ଏକତ୍ର ଭିନ୍ନମତ ହିଂସ୍ର କଲେ ନିବାସ*)

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
221/211/121/121+22
by **L Kabi 202592082228**

## ପରୀକ୍ଷା 015

ମାହେନ୍ଦ୍ରବେଳାରୁ ତୁ ଛାଡି ଶଯ୍ୟା
ସ୍ନାନାଦି ଅନ୍ତେ କର ଯାନ ଯାତ୍ରା ।
ବର୍ଷାନ୍ତୁ ଦେବେ ସକଳ ପ୍ରସାଦେ
ସାରା ଶୁଭେଚ୍ଛା ଦିଅ ଯା ପରୀକ୍ଷା ॥

ଛନ୍ଦ: **ଇନ୍ଦ୍ରବଜ୍ରା** (ତୌ ଜଗୌ ଗଃ)
221/221/121+22
by **LK 202501080004**

## ତବ ନକୁଟର ଶୋଭା 014

ମୃଗର ତରଳ ନେତ୍ରେ କ୍ଷୁଦ୍ର ଏ ମୋତି ବିନ୍ଦୁ
ତୁମରି ନକୁଟପୁଷ୍ପେ ସୌମ୍ୟତାବୃଦ୍ଧି ଆଶେ ।
ଅମିତ ଗଗନ ଯାତ୍ରା ତେଜି ତାବୀଶ ଗର୍ଭେ
ସହିଛି କଷଣ ବକ୍ଷଚ୍ଛେଦନେ ପାଂସୁଘାତେ ॥

**ନକୁଟ**= ନାସା; **ସୌମ୍ୟତା**= ସୌନ୍ଦର୍ଯ୍ୟ; **ଅମିତ**= ବିଶାଳ; **ବାରୀଶ**= ସମୁଦ୍ର; **ପାଂସୁ**= ବାଲି!

ଛନ୍ଦ: **ମାଳିନୀ** (ନନମୟୟ)

111/111/22•2/122/122
by **L. Kabi 202501072353**

## ନକ୍ଷତ୍ରମାଳା 013

ଆକାଶ ସୌଧେ ଶଶିପେଟିକାରେ
ଅଶ୍ୱେତ ଛାୟାଶିବଲିଙ୍ଗ ପାଶେ ।
ସିଦ୍ଧାଙ୍ଗନା ରାତ୍ରି କଲାଣି ପୂଜା
ନକ୍ଷତ୍ରରତ୍ନେ କରି ପୀଠସଜ୍ଜା ॥

**ପେଟିକା=** ପେଡି; **ପୀଠ=** ପୂଜାସ୍ଥଳୀ;
**ଅଶ୍ୱେତ=** କଳା;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by **LKabi 202502072323**

## ଭିକ୍ଷାପ୍ରବୃତ୍ତି 012

ପ୍ରାଚୀନ କାଳୁ କହି ଭିକ୍ଷୁକ ଦେବତୁଲ୍ୟ
ଭିକ୍ଷାକୁ ପୁଣ୍ୟ ଭିତରେ କଲ ସର୍ବମାନ୍ୟ ।
ଏ ଦେଶ ଭିକ୍ଷୁ କଲ ଦୁର୍ବଚନ ପ୍ରଭାବେ
ଏବେ ନ କାନ୍ଦି ସହି ଯାଅ କପାଳ ଲେଖା ॥

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)
221/211/121/121+22

**by LKabi 202501072207**

.

## ତାମ୍ରାକ୍ଷ ପ୍ରତି 011

ଆକାରେ ନୁହଁ ରମ୍ୟ କୌଣସି ମତେ ତାମ୍ରାକ୍ଷ ଭୂମଣ୍ଡଳେ
ଚଞ୍ଚୂ ତୀର ପରାୟ ତୀକ୍ଷ୍ଣ ପୁରତଃ ରାବେ ଭରା ରୂକ୍ଷତା ।
ଆହାରୀ ପୁଣି ନର୍ଦ୍ଦମା ମଳ ସଦା ସଂବାସ ଶାଖା ପରେ
କିମ୍ପାଁ କେ ତୁମଲାଗି ବୋଳି ମମତା ପାଳେ ସୁନା ପଞ୍ଜରେ ॥

**ଆକାର**= ଚେହେରା; **ତାମ୍ରାକ୍ଷ**= କାଉ; **ପୁରତଃ**= ଆଗରେ; **ସଂବାସ**= ଘର; **ଶାଖା**= ଡାଳ;

ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
ମସ ଜ ସ ତ ତ +ଗୁ
222/112/121/112••221/221+2

by **L Kabi 202501071307**

### ମନ୍ତବ୍ୟ:

**22 2/11 2/1 21/ 11 2/**
**ନିଶ୍ଚେ କା/ଉର ଦୁଃ/ଖ ହେବ/ ପଢି ଏ**
**22 1/ 22 1/ 2**
**ଶାର୍ଦ୍ଦୂଳ/ ବିକ୍ରୀଡି/ତମ୍**

## ପଙ୍କିଳ ନୀରଧାରା 010

ଆକାଶୁ ପର୍ବତ ପରେ ପଡି ନିମ୍ନଭାଗେ
ଯାତ୍ରା ପରେ ବହୁତ ଦୂର ନଦୀତରଙ୍ଗେ ।
ମାର୍ଗେ ସମସ୍ତ ମଳ ବୋଳି ଶରୀର ସାରା
ଅନ୍ୟେ କି ଶୁଦ୍ଧ କରି ପାରିବ ନୀର ଧାରା ॥

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
221/211/121/121+22

by **L Kabi 202501071007**

## ଲଜ୍ଜାବିମୁକ୍ତଲଳନା 009

ଊର୍ଦ୍ଧ୍ୱେ ପ୍ରଚଣ୍ଡ ସହସା ଶୁଣି ବଜ୍ରନାଦ
ଦେଖି ପ୍ରବାତ ଚଳନେ ହତ ବୃକ୍ଷଶାଖା ।
ତ୍ରାସେ ବିମୁଗ୍ଧଲଳନା ତେଜି ଲାଜଲଜ୍ଜା
ଆଶ୍ଲେଷି ଶକ୍ତ ରହିଲା ପ୍ରିୟ କାନ୍ତ ବକ୍ଷେ ॥

ଛନ୍ଦ: **ବସନ୍ତତିଳକା** - ତଭଜା ଜଗୌ ଗଃ
221/211/121/121+22
by **L. Kabi 202501062233**

## ସଞ୍ଜନା ସଞ୍ଜକାଳେ 008

ସୃଜିଲ ସଜ କି ଜନ୍ୟେ   ସଞ୍ଜନା ସଞ୍ଜକାଳେ
ରଚିବ କି ରସ ରଙ୍ଗେ   ଅଙ୍ଗନା ସଙ୍ଗଶାଳେ ।
ରମିବ ରିଧମ ରାଗେ   ଶର୍ବରେ ସ୍ୱର୍ଗରାଜ୍ୟେ
ରଚିବ ରୁଚିର ଚର୍ଯ୍ୟା   ମଞ୍ଜୁଳା ମଲ୍ଲିମାଳେ ॥ 1

***ଜନ୍ୟ= occasion; ସଞ୍ଜନା= well born;***
***ରଙ୍ଗ= love; ସଙ୍ଗଶାଳ= hall of union;***
***ରିଧମ= love; ଶର୍ବର= darkness; ଚର୍ଯ୍ୟା=***
***activity, conduct; ମଞ୍ଜୁଳା= lovely;***

ଯିବି କି ତୁମରି ସଙ୍ଗେ   ଦେଖି କେ ଭାଗ୍ୟଶାଳୀ
ଅଛି ବି ଧରଣି ବକ୍ଷେ   ଯା କଥା ଭାଳି ଭାଳି ।
ତୁମ ସରିକି ସୁନନ୍ଦା   ନନ୍ଦିନୀ ମନ୍ଦ ପାଦେ
ଗମୁଛି ମଳିନ ମାର୍ଗେ   ନିର୍ଜନେ ନିର୍ବିବାଦେ ॥ 2

*ସୁନନ୍ଦା= ସୁଲଳିତା; ନନ୍ଦିନୀ= କନ୍ୟା;*

**ଛନ୍ଦ: ମାଳିନୀ (ନନମୟୟ)**
**111/111/22•2/122/122**
**by L Kabi 202501061221**

## ଦେବଦେବୀ 007

ଅଗଣିତ ବିବୁଧାମ୍ବା ଶକ୍ତି ସାମର୍ଥ୍ୟଗାଥା
ପଢି ସକଳ ପୁରାଣେ ସ୍ପଷ୍ଟ ତା ବୋଧ ଅନ୍ତେ ।
ମନ କହୁଛି ଦେବେ ଥାନ୍ତୁ ସର୍ବପ୍ରସାଦେ
ମୁଁ କରିବି ନିତି ପୂଜା ବିଶ୍ୱକର୍ତ୍ତା ସମକ୍ଷେ ॥ 1

ବିବୁଧ= ଦେବ; ପ୍ରସାଦ= ଆନନ୍ଦ;

ଛନ୍ଦ: ମାଳିନୀ (ନନମୟୟ)
111/111/22•2/122/122
LKabi 202501061111

## ପ୍ରେମଜର୍ଜରା 006

ଅଧରେ ଭଙ୍ଗିମା ଭରା ନୟନେ କୁଞ୍ଚନ ଦ୍ୱରା ।
ରଦନେ ଚାପି ଅଙ୍ଗୁଳି ଲଳନା ପ୍ରେମଜର୍ଜରା ॥1

ରଦନ= ଦାନ୍ତ;

ବିଜନେ ସେ ଅଧୋମୁଖେ ପ୍ରଚରେ ଆପଣା ବୁକେ
ରହିତେ ଦେଖି ଚୌଦିଗେ କ୍ରମିତା ସଙ୍ଗମୋତ୍ସୁକେ ॥ 2

ପ୍ରଚର= ରାସ୍ତା: ରହିତ= ଗୋପନ; କ୍ରମିତ= ଗତିଶୀଳ; ସଙ୍ଗମ= ମିଳନ; ଉତ୍ସୁକ= କାମନା;

ବହୁ ଆଶା ଥିଲା ମନେ ସକଳେ ମାନିବେ କଥା ।
ବୁଝିଲେ ନାହିଁ କେ ଜଣେ ଅତି ହେଲା ମନବ୍ୟଥା ॥ 3

ଧରିଲା ଦମ୍ଭ ବୋଲି ସେ ମନ ହେଲା ଦିଆ ନିଆ
ପ୍ରିୟ ପାଶେ କି ସାହସେ ଲୁଚି ସେ ସାଜିଛି ପ୍ରିୟା ॥ 4

ଛନ୍ଦ ଶଲ୍ଲକପ୍ଲୁତ ସଗଣ ରଗଣ + ଲଗୁ
112/212 + 12 (8)
by LKabi 202501051016

## ଚାଟୁପ୍ରଭାବ 005

ଦୁର୍ଦ୍ଧର୍ଷ ଭୂପ ନିଜ ନିଷ୍ଠୁରକର୍ମଶଂସା
ଯେବେ ଶୁଣେ ଖୁସି ମନେ ଶିର ଦୋହଲାଏ ।
ଏହା ବିଚାରି କରିଲା ପ୍ରଭୁ ସୃଷ୍ଟିକର୍ତ୍ତା
ପୃଥ୍ୱୀର ଧାରକ ଭୁଜଙ୍ଗଙ୍କୁ କର୍ଣ୍ଣହୀନ ॥

**ଭୂପ**= ରଜା; **ଶଂସା**= ପ୍ରଶଂସା; **ଭୁଜଙ୍ଗ**= ସାପ;

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
**221 211 121 121 + 22**
**by L Kabi 202501021750**

## କାମନା 004

କାନେ ବାଜେ ରବିତନୟର ଗ୍ରାମରୁ କ୍ରନ୍ଦନାଦ
ଧୀରେ ଧୀରେ ଚିପୁଅଛି ଗଳା ମୃତ୍ୟୁଦେବଙ୍କ ହସ୍ତ ।
ପଞ୍ଚପ୍ରାଣଙ୍କ ତନୁରୁ ଖରେ ମିତ୍ରତା ହ୍ରାସ ପାଏ
ତେବେ ସୁଦ୍ଧା ବିଷୟ ପଛରେ ଧାବମାନ୍ ଏହି ଚିତ୍ତ ॥

**ରବିତନୟର ଗ୍ରାମ= ଯମର ପୁର; କ୍ରନ୍ଦ= କାନ୍ଦଣା;**
**ପଞ୍ଚପ୍ରାଣ= ପାଞ୍ଚ ପ୍ରାଣବାୟୁ;**

**ଛନ୍ଦ: ମନ୍ଦାକ୍ରାନ୍ତା ସୂତ୍ର:**
**ମନ୍ଦାକ୍ରାନ୍ତାମ୍ବୁଧିରସନଗୈ ର୍ମୋ ନତୌ ତଃ ଗଯୁଗ୍ମମ୍**
**222 2•11 111 2•21 221 + 22**
ଏହି ଛନ୍ଦର ଜନପ୍ରିୟ ଉଦାହରଣ:
**ଶାନ୍ତାକାରଂ ଭୁଜଗଶୟନଂ...**
**by L Kabi 202501041004**

## ତ୍ୟାଗ 003

ସ୍ରୋତ୍ୟା କେବେ ସଲିଳ ନ ପିଏ ସେ ଦିଏ ନୀର ଆନେ
ବିଷ୍ଵସ୍ଥ ସ୍ଵୀୟ ଫଳ ନ ନିଏ ତୁଷ୍ଟ ସେ ଅନ୍ନଦାନେ ।
ସେ ଆଦର୍ଶେ ଗୁଣିଜନନିଜେ ସ୍ଵାର୍ଥ କେବେ ନ ସାଧେ ।
ଯା ପାରେ ସେ ଅପରକୁ ଦିଏ ତ୍ୟାଗ ତାର ପ୍ରସାଦେ ॥

**ସ୍ରୋତ୍ୟା**= ନଦୀ; **ବିଷ୍ଵସ୍ଥ**= ବୃକ୍ଷ; **ସ୍ଵୀୟ**= ନିଜର; **ପ୍ରସାଦ**= ଆନନ୍ଦ;

ଛନ୍ଦ: ମନ୍ଦାକ୍ରାନ୍ତା- ମ୍ଭୁଧିରସନଗୈ ର୍ମୋ ନତୌ ତଃ ଗଯୁଗ୍ମମ୍

**L Kabi 202501030915**

## ହିଂସା 002

ମୁଦିତ ରଖିବି ଏବେ ନେତ୍ର ମୋ ସର୍ବକାଳେ
ପୁରତ ପରିତ ହିଂସା ଦେଖିବା ଶକ୍ତପୀଡା ।
ସ୍ଵବଶ ମନନ ଦେଶେ ମାନ୍ୟତାପ୍ରଶ୍ନପାରେ
ନର ସହ ନର ଯୁଦ୍ଧେ ଚୌଦିଗେ ଦେଶ ସାରା ॥1

**ସ୍ଵବଶ**= ନିଜ ମନୋଽନୁକୂଳ; **ପ୍ରଶ୍ନପାରେ**= ଚିନ୍ତନଠୁ ବାହାରେ;

**ଛନ୍ଦ: ମାଳିନୀ (ନନମୟୟ)**
**111/111/22••2/122/125**
**by L Kabi 202501030226**

## କୁଣ୍ଠା 001

କୁଣ୍ଠାର ଭାଷା ଭିତରେ ଶୁଭେଚ୍ଛା
ଦେଲେ ବି ସେ ଲାଗିବ ନାହିଁ କାମେ ।
ଯେବେ ନ ଲାଗେ ତୁମ ପାଳନୀୟ
ମିଥ୍ୟା ଶୁଭେଚ୍ଛା ନବବର୍ଷ ନାମେ ॥ 1

202501021108
ଯେତେ ସୁରାବାସ ସମଗ୍ର ଦେଶେ
ସର୍ବତ୍ର ସମ୍ବାଧ ନବୀନ ବର୍ଷେ ।
ଦେବାକୁ ବାଧା ଜନତାର ହର୍ଷେ
ଭାଷନ୍ତି ପଞ୍ଚେ ରିପୁ ଏହି ପର୍ବ ॥ 2

ସୁରାବାସ= ମନ୍ଦିର; ସମ୍ବାଧ= ଭିଡ; ରିପୁ= ଶତ୍ରୁ;

ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
221/221/121+22
by L Kabi 202501030259

# ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ (ଅର୍ଦ୍ଧସମ ମାତ୍ରିକ) ଛନ୍ଦରେ:-

ରାଜପ୍ରଭାବ
ବନ୍ଧୁ ବା ଛିଦ୍ର ଦୌର୍ଜନ୍ୟ
ଏକ ତା ମୂଳକାରଣ ।
ଚଳନ୍ତି ଯେ ପଥେ ରାଜା
ପ୍ରଜାଏ ଯାନ୍ତି ସେଥିରେ ॥ 282
ବିଦ୍ୟାହୀନ ଥିଲେ ରାଜା
ଲଭେ ମୂର୍ଖତ୍ୱ ମାନ୍ୟତା ।
ଦୟାଧର୍ମ ହରେ ମୌର୍ଖ୍ୟ
ଅଧର୍ମରୁ ଅଧୋଗତି ॥ 283
L. Kabi 20250101

ରାଜପ୍ରଭାବ

ବନ୍ଧୁ ବା ଛିଦ୍ର ଦୌର୍ଜନ୍ୟ
ଏହି ସାମାନ୍ୟ କାରଣ ।
ଯେ ମାର୍ଗେ ଚଳିବେ ରାଜା
ସେ ମାର୍ଗେ ଚଳିବେ ପ୍ରଜା ॥ **284**

ବିଦ୍ୟାହୀନ ଥିଲେ ରାଜା
ଲଭେ ମୂର୍ଖତ୍ୱ ମାନ୍ୟତା ।
ଦୟାଧର୍ମ ହରେ ମୌର୍ଖ୍ୟ
ଅଧର୍ମରୁ ଅଧୋଗତି ॥ **285**

**L. Kabi 20250101**

ଯୌବନ

ଯୌବନୋଦ୍ଦୀପନା ଯୋଗେ
ଦିଶେ ସର୍ବତ୍ର ସୌମ୍ୟତା ।
ତା ପ୍ରଭାବେ ପଶେ ପାପେ
ଯେ ହୁଏ ଚ୍ୟୁତସଂଯମ ॥ **286**

ଅବିବେକୀ ମନୁଷ୍ୟଙ୍କ
ବୃଦ୍ଧତ୍ୱକୁ ସହସ୍ର ଧିକ୍ ।
ବିବେକୀ ସର୍ବଥା ପାଏ
ତାରୁଣ୍ୟେ ହିଁ ପ୍ରସାଦନା ॥ **287**

ପ୍ରସାଦନା= ପୂଜା;

ଯୌବନେ ଶକ୍ତିବାହୁଲ୍ୟେ
ସାଧେ ଦୁଃସାଧ ମାନବ ।
ତାରୁଣ୍ୟେ ଯେ ବି ସତ୍କର୍ମେ
ନମେ ତା ଅଗ୍ରତେ ଶିର ॥ **288**

**L Kabi 20250102**

ସେବା

ତଟିନୀ ନ ପିଏ ନୀର
ନ ଭୁଞ୍ଜେ ଫଳ ପାଦପ ।
ନେତା ନିଃସ୍ୱାର୍ଥ ସେବାରେ
ଏହାଙ୍କ ସମ ଆଚରେ ॥ **289**

L Kabi 202501022322

ଅପଭ୍ରଂଶ
କାବ୍ୟଗ୍ରନ୍ଥେ ଅପଭ୍ରଂଶ
ଯା ଅସଜ୍ଜନଭାଷିତ ।
ଭାଷାରେ ନ ଥିଲେ ଶୁଦ୍ଧି
ସେ ଅପଭ୍ରଂଶ ଶାସ୍ତ୍ରରେ ॥ 290
ଅପଭ୍ରଂଶ= ଭ୍ରଷ୍ଟାଚାର;
L Kabi 20241218

ଭକ୍ତ ସର୍ବେ କଣା ନେତ୍ରେ
ସଂ
ଭକ୍ତା ହି ଚକ୍ଷୁଷା କାଣାଃ
ନିର୍ମସ୍ତିଷ୍କାସ୍ତଥୈବ ଚ ।
ଲଜ୍ଜାହୀନା ହି ତେ ସର୍ବେ
ଆତ୍ମସମ୍ମାନବର୍ଜିତାଃ ॥ 291
ଓ
ଭକ୍ତନେତ୍ର ବିନା ଡୋଳା
ନାସ୍ତି ମସ୍ତିଷ୍କ ମସ୍ତକେ ।
ବ୍ୟକ୍ତିତ୍ୱେ ଦୁର୍ଲଭା ଲଜ୍ଜ
କିଵା ସମ୍ମାନଚେତନା ॥ 292
ଏ ଭାବେ ଅନ୍ଧଭକ୍ତଙ୍କ
ଲକ୍ଷଣ ପ୍ରାପ୍ତ ପୁସ୍ତକେ ।
ପ୍ରଥମେ ପ୍ରଭୁ ତାହାଙ୍କ
ଡୋଳା କାଢନ୍ତି ଭକ୍ତର ॥ 293
LK 20250105

କବି ଓ ପାଠକ ****
କବି ଓ ପାଠକେ ବ୍ୟଗ୍ରେ
ଖୋଜୁଛନ୍ତି ପରସ୍ପରେ ।
କାହାକୁ ନ ମିଳେ ଅନ୍ୟ
ସର୍ବେ ଦିଗ୍‌ଭ୍ରଷ୍ଟ ସମ୍ପ୍ରତି ॥ 395
LK 20250105

ମୁଖଭଙ୍ଗି
ମୁଖଭଙ୍ଗିରୁ ଜାଣନ୍ତି
ମନୋଭାବକୁ ବୁଦ୍ଧିମାନ୍ ।
ଭ୍ରାମର ଭ୍ରାମରେ ଚିହ୍ନେ
ପ୍ରସୂନେ ଦେଖି ସମ୍ପଦ  ॥ 296
L Kabi 20250107

ଗୁପ୍ତଭାବନା
ବଚନେ ଅଙ୍ଗବିକ୍ଷେପେ
ଭ୍ରୂଭଙ୍ଗେ ପଦଚାଳନେ
ସମ୍ୟକ୍ ଭାବେ ହୁଏ ଜ୍ଞାତ
ମନୋମଧ୍ୟସ୍ଥ ଭାବନା ॥ 297
LK 20250107

ପ୍ରେମଭାଷା
ଥିଲେ ହେଁ ପ୍ରଚୁର ଶ୍ରଦ୍ଧା
ପ୍ରିୟା ପାଶେ ପ୍ରକାଶିଲେ ।
ନିଶ୍ଚେ ଜାଣିବ ଦୌର୍ବଲ୍ୟ
ହେବ ତା ପ୍ରେମ ଲାଘବ ॥ 298
LK 20250107

ସତ୍କର୍ମ
ସଂ
କୃତମନ୍ୟେନ ଯତ୍କାର୍ଯ୍ୟଂ
ମନ୍ୟତେ ଗର୍ହିତଂ ତ୍ୱୟା ।
ତ୍ୱୟା କୃତେ କିମାଶ୍ଚର୍ଯ୍ୟଂ
ପୁଣ୍ୟତାଂ ତସ୍ୟ ଭାଷସେ ॥ 299
ଓ
ଅନ୍ୟ କେହି କଲେ ଯାହା
ବର୍ଜନୀୟ ତୁମେ କହ ।
ନିଜେ ସମ୍ପାଦି ଆଶ୍ଚର୍ଯ୍ୟ
କହ ସେ କାର୍ଯ୍ୟ ପାବନ ॥ 300

LK 20250107

ପୁଣ୍ୟବାନ୍
ପ୍ରେମାର୍ଦ୍ରା ସୁବିଶାଳାକ୍ଷା
ଲଜ୍ଜାଶୀଳା ସମର୍ପିତା ।
ପୁଣ୍ୟବାନ୍ ସଜ୍ଜନେ ଲବ୍ଧା
ଧୀରା ସେହି ସୁଶିକ୍ଷିତା ॥301
LKabi 20250109

ରସାସ୍ୱାଦନ
କବି ସୃଷ୍ଟି କରେ କାବ୍ୟ
ରସ ଚାଖନ୍ତି ପଣ୍ଡିତେ ।
ସୁନ୍ଦରୀ ମୁଖଲାବଣ୍ୟ
ଜାଣେ ପତି ନୁହେଁ ପିତା ॥ 302
LK 202501110211

ତୀର ଓ କବିତା
କବିଙ୍କ କବିତା ପାଶେ
ମ୍ଳାନ ଧନ୍ୱୀଙ୍କ ଶାୟକ ।
କବିତା ହୃଦୟେ ଭେଦେ
ଛେଦେ ନା କାର ମସ୍ତକ ॥ 303
LK 202501110151

ବିଳାସୀ ଭୂପ
ଯାମୀରା ଗର୍ଭରେ ଲୋକେ
କେମେରା ପର୍ବରେ ରଜା
ଦୂର୍ଦ୍ଦମ୍ୟ ଘର୍ମଜେ ଲୋକେ
ରମ୍ଯ ହର୍ମ୍ୟେ ରମେ ରଜା ॥ 304
ଯାମୀରା= ରାତ୍ରି; ଘର୍ମଜ= ଝାଳ;
ହର୍ମ୍ୟ= ପ୍ରାସାଦ;
LK 202501111431

ରସହୀନ କବିତା
କି ଅର୍ଥ ପଢି ସେ କାବ୍ୟ
କଲେ ଯାହାକୁ ମନ୍ଥନ ।
ବାରୀଶୁ ମଦିରା ପ୍ରାୟେ
ନ ହୁଏ ରସସମ୍ଭବ ॥ 305
ବାରୀଶ= ସମୁଦ୍ର; ମଦିରା=;
ଅମୃତ; ସମ୍ଭବ= ନିର୍ଗମନ;
LK 202501112020

ରସାସ୍ୱାଦୀ
ପୂଜ୍ୟ ସର୍ବେ ସଦାଚାରୀ
ରସାସ୍ୱାଦୀ କବୀଶ୍ୱର ।
ଦେହାବସାନରେ ମଧ
ସାହିତ୍ୟେ ଥାନ୍ତି ଜୀବିତ ॥ 306
ଆସ୍ୱାଦୀ= ଆସ୍ୱାଦନକାରଘ;
କବୀଶ୍ୱର= କବିଶ୍ରେଷ୍ଠ;
LK 20250111352

ଚିତ୍ତସଂଶୁଦ୍ଧି ***
ସୁବିଦ୍ୟା ଦିଅ ବିଘ୍ନେଶ 294 missed
କଳା ଦିଅ ସରସ୍ୱତି !
କର ମୋ ଚିତ୍ତ ସଂଶୁଦ୍ଧ
କାବ୍ୟଛନ୍ଦେ ମୁଁ ଲେଖିବି ॥ 294
by LK 202501121354

କବିତ୍ୱଚାତୁରୀ
ଚାତୁରୀ ବଳରେ ନେଇ
କିଛି ଅନ୍ୟର କାବ୍ୟରୁ
କବିତା ସ୍ୱୀୟ ଯେ ଲେଖେ
ସେ କବିଙ୍କୁ ନମୋ ନମଃ ॥ 307
LK 202501121352

ସଜ୍ଜନ
ଆଚରେ ଶୁଭ ଶୀଳତ୍ୱ
ଦୂରେ ନିନ୍ଦିତ କର୍ମରୁ ।
ସର୍ବଜୀବେ ରଖେ ଶ୍ରଦ୍ଧା
ଏହି ଜ୍ଞାନୀର ଲକ୍ଷଣ ॥ 308
LK 202501121801

କର୍ମୀ
ଆରମ୍ଭି ଶୁଭ ସମ୍ପାଦ୍ୟ
ଦିଏ ନା ଦୋଷ କର୍ମକୁ ।
ଶେଷ ପୂର୍ବରୁ ତେଜେ ନା
ସେହି କର୍ମୀ ହିଁ ନୈଷ୍ଠିକ ॥ 309
LK 202501122838

ଶଙ୍କା
ଅନେକ ଜୀବନେ ଶୋକ
ଆପଦ୍ଭୀତି ତତୋଽଧିକ ।
ମୂଢ଼ ନିତ୍ୟ କରେ ଶଙ୍କା
କିନ୍ତୁ ନିର୍ଭୟ ଶାସ୍ତ୍ରବିତ୍ ॥ 310
LK 202501121901

ମିଥ୍ୟା ଭାଷଣ
ଶିଖାଏ ତ୍ୟାଗ ମାହାତ୍ମ୍ୟ
ସମ୍ପତ୍ତିର ବିନାଶିତା ।
ଆଶ୍ରମେ ଆପଣା ବିତ୍ତ
ଭଣ୍ଡ ବାବାର ପର୍ବତେ ॥ 311
by LK 202501122201

ତପଶ୍ଚର୍ଯ୍ୟା
ଚନ୍ଦ୍ରାନନା ନନାଗ୍ରେ ଥା
ଶଙ୍କରଙ୍କର ସଙ୍କଟେ ।
ତପଶ୍ଚର୍ଯ୍ୟାର ପଶ୍ଚାର୍ଦ୍ଧେ
ପ୍ରାୟଶ୍ଚିତ୍ତ ସୁନିଶ୍ଚୟ ॥ 312

ସ୍ଖଳ ନେତ୍ରେ ବିଶାଳାକ୍ଷୀ
ବିଶାଳାରେ ବଳା ମତି ।
ସିଦ୍ଧାଙ୍ଗନା ତୁ ହେ ସାଧ୍ୱୀ
ସାଧନେ ହେଉ ସଦ୍ଗତି ॥ 313
ନନାଗ୍ର= ଗିରିଶୃଙ୍ଗ; ସଙ୍କଟ= ଗିରିସଙ୍କଟ;
ପଶ୍ଚାର୍ଦ୍ଧ= ପଛ; ସ୍ଖଳ= ଥରିଲା; ବିଶାଳା=
ମୂର୍ଚ୍ଛନାବିଶେଷ;
LK 202501122325

ଶାସ୍ତ୍ରପାଠ
ଶାସ୍ତ୍ରପାଠେ ଥିଲେ ଶ୍ରଦ୍ଧା
ବୁଝ ତା ପ୍ରତି ଅକ୍ଷର ।
ବୋଧ ମାତ୍ରେ ସୁଧା ଶାସ୍ତ୍ର
ବିଷ ବିକ୍ଷିପ୍ତ ବୋଧନ ॥ 314
ଟ୍ରମ୍ପ୍= donskd trump!
ବିକ୍ଷିପ୍ତ=ବ୍ୟାବୃତ୍ତ,perverted;
LK 202501142914

ଅଶୌଚୋଚ୍ଛିଷ୍ଟ
ଛୁଆର ଅଇଁଠା-କଣ୍ଟା
ଛୁଆଞ୍ଚି ଜ୍ୱାଇଁ ବାବୁର
ଧରିବାଟା ମନା ପାଠେ
ଯେ ଧରେ ମୂଢ ନିଶ୍ଚୟ ॥ 315
ଗୋଡ ସଂଖ୍ୟା
ଗାଈର ଚାରିଟା ଗୋଡ
ନ ଜାଣିଛି କିଏ ଛୁଆ
ଲେଖି ଏହି ଛୁଆଙ୍କାନ
କବିତା କହିବା କିଆଁ ॥ 316
ଯାହା ବିତରିବା ଯୋଗ୍ୟ
ନ ଥିଲେ କିଛି ସେ ପରି
ଖାତା ଯେତେ କଲେ ମୋଟା
ବୃଥା ଲେଖାର ଚାତୁରୀ ॥ 317
L Kabi 202501150001

ମୃତ୍ପିଣ୍ଡ
ଦାହ ଯେଣୁ ହୁଏ ଦେହ
ଶୀର୍ଯ୍ୟ ବୋଲି ଶରୀର ସେ ।
ବିଗୃହୀତ ହୁଏ ବୋଲି
ନାମ ତାହାର ବିଗ୍ରହ ॥ 318
LKabi 202501172238

ତୀର୍ଥ
ଅନ୍ୟ ସଙ୍ଗେ ଯିବା ମାର୍ଗେ
ଫେରିବାରେ ପରସ୍ୱରେ ।
ପ୍ରବୃତ୍ତ କଳହେ ଭକ୍ତେ
ନିଶ୍ଚେ ସେ ତୀର୍ଥ ନିଷ୍ଫଳ ॥ 319
LK 202501181543

ପ୍ରେମ ଓ ମୂର୍ଖ
ରାଧାକୃଷ୍ଣଙ୍କର ପ୍ରେମେ
ଯଥେଚ୍ଛ କର ଉତ୍ସବ ।
ନିଜେ ପ୍ରେମ କଲେ ପାର୍କ୍‌ରେ
ମୂର୍ଖ ଧର୍ମାନ୍ଧ ମାରିବେ ॥ 320
LK 202501182248

ବିଦେଶୀ ପର୍ବ
ପେଣ୍ଟ୍‌ସାର୍ଟ୍ ପିନ୍ଧି ଖଦୀ ତେଜି
କମୋଡେ ହଗି ନିତ୍ୟଶଃ ।
ଦିଅନ୍ତି ଅନ୍ୟକୁ ଜ୍ଞାନ -
ବିଦେଶୀ ପର୍ବ ପାଳନା ॥ 321
LKabi 202501191519

ଭଗବାନ୍
ଯା ସମ୍ବନ୍ଧେ ସବୁ ଜ୍ଞାନ
ଅନ୍ଧଙ୍କ ଦ୍ୱିପଦର୍ଶନ ।
ଥିଲା ଥିବ ଧରାପୃଷ୍ଠେ
ଭଗବାନ୍ ସେହି କେବଳ ॥ 322

ଦ୍ୱିପଦର୍ଶନ= ହାତୀଦେଖା;
LKabi  202501222346

ଭଗବାନ୍ ଈଶ୍ୱର ବ୍ରହ୍ମ

ଗୁଣାତୀତ ପରବ୍ରହ୍ମ
ନିରାକାର ସୁନିଶ୍ଚଳ ।
ଈଶ୍ୱର ତ୍ରିଗୁଣେ ଯୁକ୍ତ
କିନ୍ତୁ ଆକାରବର୍ଜିତ ॥ 323
ସାକାର ଭଗବାନ୍ ମର୍ତ୍ତ୍ୟେ
ଗୁଣସଂଯୁକ୍ତ ସର୍ବଦା ।
ପରମାତ୍ମାଙ୍କ ଏ ଭାବେ
ପ୍ରତ୍ୟୟତ୍ରୟ କଳ୍ପିତ ॥ 324

ପ୍ରତ୍ୟୟତ୍ରୟ= ତିନି ଅବଧାରଣା,
**the three concepts;**
*(ଭଗବାନ୍= ସଗୁଣସାକାର, ଈଶ୍ୱର= ସଗୁଣ ନିରାକାର ଓ ବ୍ରହ୍ମ= ନିର୍ଗୁଣ ନିରାକାର — ପରମାତ୍ମାଙ୍କ ସମ୍ବନ୍ଧରେ ତିନି ପ୍ରକାର ଅବଧାରଣା ଶାସ୍ତ୍ରସମ୍ମତ ।)*
L Kabi   202501221637

ଆତ୍ମାର ସ୍ତର

ପଞ୍ଚେନ୍ଦ୍ରିୟ ତଳେ ବସ୍ତୁ
ଇନ୍ଦ୍ରିୟଙ୍କ ପରେ ମନ ।
ମନଠାରୁ ପରେ ବୁଦ୍ଧି
ଆତ୍ମା ତାଠୁ ମହତ୍ତର ॥ 325
LKabi  202501291101

ଭିକ୍ଷା

ଭିକ୍ଷାବୃତ୍ତି କରେ ନାଶ
ଏହି ପାଞ୍ଚଟି ସାଧନ ।
ସମୃଦ୍ଧି ବୁଦ୍ଧି ସୌନ୍ଦର୍ଯ୍ୟ
ପ୍ରଭାବ ଖ୍ୟାତି ସଜ୍ଜନେ ॥ 326

LKabi 202501291133

ଦୀର୍ଘତା
ଉନ୍ନିଦ୍ରର ନିଶା ଦୀର୍ଘ
ଦୀର୍ଘ କ୍ଳାନ୍ତର ବୀଥିକା ।
ସତ୍କର୍ମେ ଯେ ନୁହେଁ ଲିପ୍ତ
ଦୀର୍ଘ ତା ଲାଗି ଜୀବନ ॥ 327
ନିଶା= ରାତି; ବୀଥିକା= ରାସ୍ତା;
LKabi 202501291146

ଅଯୋଗ୍ୟ
ସର୍ବେ ସମଗୁଣେ ଯୁକ୍ତ
ସର୍ବେ ନିଷ୍ଫଳ କର୍ମରେ ।
ଯେବେ ହୁଅନ୍ତି ଏକତ୍ର
ଟେକୁଥାନ୍ତି ପରସ୍ପରେ ॥ 328
LKabi 202501291159

ଦାନ ଭୋଗ ବିନାଶନ
ଦାନ ଭୋଗ କିବା ନାଶ
ଗତି ଏ ତିନି ବିତ୍ତର ।
ନିଶ୍ଚେ ତାହା ହୁଏ ନାଶ
ଦାନେ ଭୋଗେ ନ ଲାଗିଲେ ॥ 329
LKabi 202501291523

ସୁଖବିଦ୍ୟା
ବର୍ଜେ ସୁଖକୁ ବିଦ୍ୟାର୍ଥୀ
ବିଦ୍ୟା ତେଜେ ସୁଖାଶ୍ରୟୀ ।
ସୁଖାର୍ଥୀର କି ବା ବିଦ୍ୟା
ବିଦ୍ୟାର୍ଥୀର କି ବା ସୁଖ ॥ 330
LKabi 202501291554

ଢଗଜ୍ଞ

ଢଗଜ୍ଞ ବଳବାନ୍ ଲୋକେ
ତରନ୍ତି ଢଗବାଚନେ ।
ବୈଫଲ୍ୟେ ଦୋଷ ଫାଙ୍କନ୍ତି
ଦୋଷ ପେଲନ୍ତି ଅନ୍ୟକୁ ॥ 331

ଢଗଜ୍ଞ= ଯେ ଢଗ ଜାଣେ; ତରନ୍ତି=
ଉଦ୍ଧାର ପାନ୍ତି; ବାଚନ= କହିବା;

**LKabi 202501300730**

ଦିଅ ବିଦ୍ୟା

ଦିଅ ବିଦ୍ୟା ଦିଅ ଜ୍ଞାନ
ଭାବରାଶି କଳାମ୍ବିକା ।
ଦିଅ ମା ରୁଚିରା ଭାଷା
ବୀଣାହସ୍ତା ସରସ୍ୱତୀ ॥ 332

**LKabi 202501022854**

ମାୟାବୀ ରୂପ

ଶୈଶବେ କ୍ୟୁଟ୍ ଥିଲା କଂସ
ପ୍ରହ୍ଲାଦର ପିତା ତଥା ।
ପୁତନା ମଧ ଗୋଲ୍‌ମୋଟୀ
ଥିଲା ତା ବାଲ୍ୟକାଳରେ ॥ 333

କେବେ କି ଦେଖି କା ରୂପ
ବାହ୍ୟ ତାହାର ସୌମ୍ୟତା ।
ନିର୍ବିଚାରେ ମନୁଷ୍ୟଙ୍କୁ
ବିଶ୍ୱାସ କରିବା କଥା ॥ 334

**LKabi 202502071201**

ଗଙ୍ଗାବତରଣ

ପୁଣ୍ୟନୀରା ମହାଦେବୀ
ମାତା ଭାଗୀରଥୀ କଲେ ।
ଧରା ବକ୍ଷେ ପଦକ୍ଷେପ
ଦଶମୀ ଜ୍ୟେଷ୍ଠଶୁକ୍ଳରେ ॥ 335

ସେ ଦିନେ ଜ୍ୟେଷ୍ଠରେ ଶୁକ୍ଳେ
ଦଶମୀ ତିଥି ଆଗମେ ।
ଭୂପୃଷ୍ଠେ ଆସିଲେ ମାତା
ଶିବଙ୍କ ଜଟ ମଧ୍ୟରୁ ॥ 336
**LKabi 202502071446**

ପୀୟୂଷସଲିଳା ଗଙ୍ଗା-
ଗମେ ଏ ପୁଣ୍ୟ ବାସରେ ।
ଶ୍ରଦ୍ଧାଞ୍ଜଳି ସମର୍ପନ୍ତି
ଭକ୍ତେ ଦୂର ହିମାଳୟେ ॥ 337
ଏ ଶ୍ରଦ୍ଧାଞ୍ଜଳି ସମ୍ପାଦି
ଯାତ୍ରୀଏ ଯାନ୍ତି ଆଗକୁ ।
ଗଙ୍ଗୋତ୍ତରୀ କିଏ ଯାଏ
କେ ବା ଅନ୍ୟାନ୍ୟ ତୀର୍ଥକୁ ॥ 338
ତପୋବନ୍ନୁ ଚଳେ କେହି
କେ ମାନସ ସରୋବରେ ।
କେ ସୁମେରୁ କି କୈଳାସେ
କିଏ ନନ୍ଦନକାନନେ ॥ 339
ଏ ଦୁର୍ଗମ ପଥେ ଯାତ୍ରା
ହେମାଳ ଗିରିସଙ୍କଟେ ।
ଉପଭୋଗ୍ୟ ମହାପୁଣ୍ୟ
ହୁଏ ନା ଭୁଲି ଜୀବନେ ॥340
**LKabi 202502080022**

ଗୁରୁ
ଯେ ଶିକ୍ଷାଗୁରୁ ଆଦର୍ଶ
ନାନାଗ୍ରନ୍ଥେ ପ୍ରବୀଣ ସେ ।
କିଛି ତା ମଧ୍ୟରେ ମେଣ୍ଢା
ସିଲାବସ୍‌ରେ ହିଁ ସୀମିତ ॥ 341
**LK 20250209**



**ଏଥିରେ:**

**ଅର୍ଦ୍ଧକଳା, ଇନ୍ଦ୍ରବଜ୍ରା, ଇନ୍ଦ୍ରବଂଶା, ଉପେନ୍ଦ୍ରବଜ୍ରା, ଚନ୍ଦ୍ରିକା, ତୋଟକ, ଦୋଧକ, ପ୍ରମିତାକ୍ଷରା, ପ୍ରମୁଦିତବଦନା, ପ୍ରହର୍ଷିଣୀ, ଭୁଜଙ୍ଗପ୍ରୟାତ, ମନ୍ଦାକ୍ରାନ୍ତା, ମାଳିନୀ, ରଥୋଦ୍ଧତା, ବସନ୍ତତିଳକା, ବାଣିନୀ, ବଂଶସ୍ଥ (ବଂଷସ୍ଥବିରମ୍), ଶଲ୍ଲକପ୍ଲୁତ:ଳ, ଶାର୍ଦ୍ଦୂଳବିକ୍ରୀଡିତମ୍, ଶିଖରିଣୀ, ସରୋଜାବଳୀ, ସ୍ରଗ୍ଧରା, ସ୍ରଗ୍ୱିଣୀ, ଉପଜାତି (ଇ+ଉ), ହାରିଣୀ, 14/440, ଆର୍ଯ୍ୟା, ଗୀତି-ଆର୍ଯ୍ୟା, ପଥ୍ୟାବକ୍ତ୍ର ଅନୁଷ୍ଟୁପ୍;**



# ପରିଶିଷ୍ଟ: ତତ୍କାଳ ଛନ୍ଦଃଶିକ୍ଷା

ଛନ୍ଦ କଣ? ଏହି ଶବ୍ଦ ସଂସ୍କୃତର କ୍ଳୀବ ବା ନପୁଂସକ ଲିଙ୍ଗବାଚକ ଛନ୍ଦସ୍ ଶବ୍ଦରୁ ଉଦ୍ଭୂତ । ଛନ୍ଦସ୍ ଶବ୍ଦର ପ୍ରଥମା ବିଭକ୍ତି ରୂପ ଯଥାକ୍ରମେ ଛନ୍ଦଃ ଛନ୍ଦସୀ ଛନ୍ଦାଂସି ।

ଛନ୍ଦ ଶବ୍ଦ ବେଦରୁ ଆନୀତ । ପ୍ରଯୁକ୍ତ ବର୍ଣ୍ଣର ସଙ୍ଖ୍ୟା କ୍ରମ ମାତ୍ରାର ଗଣନ ଓ ଯତି ଗତି ସହ ସମ୍ବନ୍ଧ ବିଶେଷ ନିୟମାବଳୀରେ ନିୟୋଜିତ ପଦ୍ୟର ନାମ ଛନ୍ଦ । ଏ ସବୁ ଶୃଙ୍ଖଳା ନ ଥିଲେ ଗୀତ ହେଇ ପାରେ ଛନ୍ଦ ହୁଏ ନାହିଁ । ଏହି ବିଧାନସମୂହର ନିର୍ଦ୍ଦେଶକ ଗ୍ରନ୍ଥର ନାମ **ଛନ୍ଦଃଶାସ୍ତ୍ର** ।

ବେଦସ୍ଥ ଛନ୍ଦରେ କେବଳ ଅକ୍ଷର ସଙ୍ଖ୍ୟାର ଶୃଙ୍ଖଳା ଥାଏ ବର୍ଣ୍ଣ (ଲଘୁ ଓ ଗୁରୁ ବର୍ଣ୍ଣ)ର ଶୃଙ୍ଖଳା କି ମାତ୍ରାର ଆକଳନଶୃଙ୍ଖଳା ନ ଥାଏ । କିନ୍ତୁ ବେଦ ମନୁଷ୍ୟକୃତ ନୁହେଁ ଈଶ୍ୱରକୃତ ତେଣୁ ଅପୌରୁଷେୟ । ବେଦର ଛନ୍ଦ ମଧ୍ୟ ଅପୌରୁଷେୟ । କବିଗଣ **ବୈଦିକଛନ୍ଦ** ଲେଖନ୍ତି ନାହିଁ ।

କବିମାନେ ଓ ସାଧାରଣ ଲୋକେ ଲଘୁଗୁରୁ ବର୍ଣ୍ଣର ଓ ମାତ୍ରାଗତ ଶୃଙ୍ଖଳାରେ ଶୃଙ୍ଖଳିତ ଲୌକିକ ଛନ୍ଦ ଲିଖନର ଅଧିକାରୀ । ଜ୍ଞାତବ୍ୟ ଯେ ଉଚ୍ଚାରିତ ହେବାକୁ ଯେଉଁ ବର୍ଣ୍ଣ ସ୍ୱଳ୍ପ (ଏକମାତ୍ରା) ସମୟ

ନିଏ ତାହା **ଏକମାତ୍ରିକ** ବା **ଲଘୁ** ବର୍ଣ୍ଣ ଓ ଯାହା ଅଧିକ (ଦୁଇ ମାତ୍ରା) ସମୟ ନିଏ ତାହା **ଦ୍ୱିମାତ୍ରିକ** ବା **ଗୁରୁ** ବର୍ଣ୍ଣ । ଛନ୍ଦଃଶାସ୍ତ୍ରରେ ମାତ୍ରା ଅର୍ଥ ଉଚ୍ଚାରଣକାଳ ।

ପ୍ରାଚୀନ ଭାରତରେ ଓ ଆଜି ବି  ସଂସ୍କୃତର ସମସ୍ତ ପଦ୍ୟ ଓ ଅନ୍ୟାନ୍ୟ ଭାଷାର ଅନେକ ପଦ୍ୟ ଛନ୍ଦୋବଦ୍ଧ କରି ଲେଖା ହେଉଛି ।

ଇହଲୋକର ମନୁଷ୍ୟ ବା କବିଗଣ ଲେଖିବାକୁ ଅଧିକୃତ ଏହି ଛନ୍ଦ ସମୂହ ବା ଲୌକିକ ଛନ୍ଦ ଦୁଇ ପ୍ରକାର ଯଥା ବାର୍ଣ୍ଣିକ ଛନ୍ଦ ଓ ମାତ୍ରିକ ଛନ୍ଦ ବା ମାତ୍ରାଚ୍ଛନ୍ଦ ।

ବାର୍ଣ୍ଣିକ ଛନ୍ଦରେ ପାଦର କେଉଁ ବର୍ଣ୍ଣ ଲଘୁ ଓ କେଉଁ ବର୍ଣ୍ଣ ଗୁରୁ ହେବ ସେ ନିୟମ ମାନିବାକୁ ପଡେ । ଗୋଟିଏ ବି ବର୍ଣ୍ଣରେ ବ୍ୟତିକ୍ରମ କଲେ **ଛନ୍ଦୋଭଙ୍ଗ** ଦୋଷ ଲାଗେ । ଏହିବର୍ଣ୍ଣଗୁଡିକୁ ଗୋଟିକି ଗୋଟି ଲଘୁ କିଏ ଗୁରୁ କିଏ ଲେଖି ରଖି ହେବ । ଲେଖିବାକୁ ସାମାନ୍ୟତଃ ପ୍ରତୀକ ବା ଚିହ୍ନର ପ୍ରୟୋଗ ହୁଏ । ପ୍ରାଚୀନ ଶାସ୍ତ୍ରରେ ଲଘୁ ବର୍ଣ୍ଣ ପାଇଁ ଇଂରାଜୀ ଆଇ (i) ପରି ଓ ଗୁରୁ ବର୍ଣ୍ଣ ପାଇଁ ଇଂରାଜୀ ଏସ୍ (s) ପରି ଚିହ୍ନ ଲେଖା ଯାଉ ଥିଲା । **ଯଥା ପ୍ରମାଣିକା**  isi sis is - ଅର୍ଥାତ୍ ପ୍ରମାଣିକା ଛନ୍ଦର ପ୍ରତି ପାଦରେ ଆଠ ବର୍ଣ୍ଣର କ୍ରମ ହେଲା ଲଘୁ-ଗୁରୁ-ଲଘୁ ଗୁରୁ-ଲଘୁ-ଗୁରୁ ଏବଂ ଲଘୁ-ଗୁରୁ । ବର୍ଣ୍ଣକ୍ରମକୁ ଅନ୍ୟଥା ଗଣକ୍ରମ ଆକାରରେ ବି ଲେଖା ଯାଏ ବୋଲି ବାର୍ଣ୍ଣିକଛନ୍ଦର ଅନ୍ୟ ନାମ ଗଣଚ୍ଛନ୍ଦ ।

ମାତ୍ରିକ ଛନ୍ଦରେ ପାଦର ଅକ୍ଷର ସଙ୍ଖ୍ୟା ନିର୍ଦ୍ଦିଷ୍ଟ ନ ଥାଏ କିନ୍ତୁ ଲଘୁଗୁରୁ ବର୍ଣ୍ଣର ଅତ୍ୟଳ୍ପ ନିୟମ ସହ ମାତ୍ରା ଗଣନାର ନିୟମ ଅଛି । ଯଥା: ଗଙ୍ଗ - ନ ମାତ୍ରା ଅନ୍ତ ss  ଅର୍ଥାତ୍ ଗଙ୍ଗ ଛନ୍ଦର ପାଦରେ ମୋଟ ୯ ମାତ୍ରା ରହିବ ଓ ସେଥିରୁ ପ୍ରଥମ ୫ ମାତ୍ରା କବି ସ୍ୱଇଚ୍ଛାରେ ଲେଖିଲା ପରେ ଶେଷ ୪ ମାତ୍ରା ନିମିତ୍ତ କେବଳ ଦୁଇଟି ଗୁରୁ ବର୍ଣ୍ଣ ଲେଖିବେ  ।

**ଗଣ** କଣ ? ଗଣ ହେଲା ୩ ବର୍ଣ୍ଣର ସମଷ୍ଟିର ନାମ । ଏଗୁଡିକ ବର୍ଣ୍ଣକ୍ରମକୁ ନେଇ ନାମିତ । ଯଥା ନଗଣ- iii ସଗଣ- iis ଜଗଣ- isi ଯଗଣ- iss ଭଗଣ- sii ରଗଣ- sis ତଗଣ- ssi ଓ ମଗଣ- sss । **ଗଣସଙ୍ଖ୍ୟା** ମୋଟ ଏହି ୮ ।

ଏସବୁ ଗଣନାମ ନାମ କିପରି ମନେ ରହିବ? ମନେ ରଖିବାର ଶାସ୍ତ୍ରୀୟ ଉପାୟ **ୟମାତାରାଜଭାନସ ଲଗା** । ଯେଉଁ ଗଣର ଲକ୍ଷଣ ଜାଣିବେ ସେହି ଅକ୍ଷର ଓ ତା ପର ଦୁଇଟି ପଢିଲେ ଜାଣି ହେବ । ଯଥା ୟଗଣ ପାଇଁ ୟମାତାରେ ଅଛି ୟ ଲଘୁ ମା ଗୁରୁ ଓ ତା ଗୁରୁ । ତେଣୁ ୟଗଣ iss । ସେହି ପରି ତଗଣ ପାଇଁ ତାରାଜ ssi ଓ ନଗଣ ପାଇଁ ନସଲ କହେ ନଗଣ iii ଇତ୍ୟାଦି । ଏଥିରେ ଲ ଅକ୍ଷର ଲଘୁ ଓ ଗ ଅକ୍ଷର ଗୁରୁ ବର୍ଣ୍ଣର ପ୍ରତୀକ ।

ଗଣନାମ ସାହାଯ୍ୟରେ ମଧ ବାର୍ଣ୍ଣିକ ଛନ୍ଦର ଲକ୍ଷଣ ଲେଖା ହୁଏ । **ଯଥା:- ପ୍ରମାଣିକା** ଜରୌ ଲଗୌ ଅର୍ଥାତ୍ ପ୍ରମାଣିକା ଛନ୍ଦର ପାଦରେ ରହେ ଜର (ଜଗଣ ଓ ରଗଣ - ଦ୍ୱିବଚନେ ଜରୌ) ଓ ତା ପରେ ଲଘୁ ଓ ଗୁରୁ - ଏପରି ୮ ବର୍ଣ୍ଣ ବା isi sis is ।

ମାତ୍ରିକ ଛନ୍ଦ ଭିନ୍ନ ପ୍ରକାର । ଏଥିରେ ଟଗଣ- ୬ ମାତ୍ରା ଠଗଣ ୫ ମାତ୍ରା ଡଗଣ ୪ ମାତ୍ରା ଢଗଣ ୩ ମାତ୍ରା ଓ ଣଗଣ ୨ ମାତ୍ରାର ସମଷ୍ଟିକୁ ବୁଝାଏ ।

ଯେଉଁ ଛନ୍ଦରେ ୪ଟି ଯାକ ଚରଣର ସମସ୍ତ ନିୟମ ସଂପୂର୍ଣ୍ଣ ଏକା ତାହା **ସମ ଛନ୍ଦ** । ଯେଉଁଥିରେ ପ୍ରଥମ ଓ ତୃତୀୟ ଚରଣ ପାଇଁ ସମସ୍ତ ନିୟମ ଏକା ଓ ଦ୍ୱିତୀୟର ସମସ୍ତ ନିୟମ ସହ ଚତୁର୍ଥ ପାଦର ସମସ୍ତ ନିୟମ ଏକା କିନ୍ତୁ ପ୍ରଥମ-ତୃତୀୟ ଚରଣର ନିୟମାବଳୀଠୁ ଦ୍ୱିତୀୟ-ଚତୁର୍ଥ ଚରଣର ନିୟମାବଳୀ ଭିନ୍ନ ତାହା **ଅର୍ଦ୍ଧସମ** ଛନ୍ଦ । ଭାଷାନ୍ତରେ ଅର୍ଦ୍ଧସମ ଛନ୍ଦରେ ପଦର ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧ ଏକା ପରି କିନ୍ତୁ ପ୍ରଥମ-ତୃତୀୟ ସହ ଦ୍ୱିତୀୟ-ଚତୁର୍ଥ ମିଶେ ନାହିଁ । ଏ ଦୁଇ ପ୍ରକାରରୁ ଭିନ୍ନ ସମସ୍ତ ଛନ୍ଦ **ବିଷମ** ଛନ୍ଦରେ ପରିଗଣିତ ।

ଜ୍ଞାତବ୍ୟ ଯେ ଛନ୍ଦରେ ପଦ ମୁଖ୍ୟତଃ ୪ ଚରଣରେ ହେଉ ଥିବାରୁ ଏହାର ଚରଣଗୁଡ଼ିକୁ ପାଦ ବୋଲି ମଧ କହା ଯାଏ । କାରଣ ହେଲା ପାଦର ଅନ୍ୟାର୍ଥ ଏକ ଚତୁର୍ଥାଂଶ । ଏହି ପାଦ ଶବ୍ଦରୁ ଅପଭ୍ରଷ୍ଟ ଶବ୍ଦ ପାଏ ଭାରତର ଆଞ୍ଚଳିକ ଭାଷା ମାନଙ୍କରେ ବହୁ ପ୍ରଚଳିତ ।

ଦୁଇ ପ୍ରକାର ବାର୍ଣ୍ଣିକ ଛନ୍ଦର ମିଶ୍ରଣରେ ଯେଉଁ ଛନ୍ଦ ହୁଏ ତାହା **ଉପଜାତି** ଶ୍ରେଣୀର । ଯଥା ମୋଟ ୪ ପାଦରୁ ଏକ ବା ଏକାଧିକ ଇନ୍ଦ୍ରବଜ୍ରା ଛନ୍ଦର ପାଦ ଓ ଅବଶିଷ୍ଟ ଉପେନ୍ଦ୍ରବଜ୍ରା ଛନ୍ଦର ନିୟମରେ ହେଇ ଥିଲେ ତାହା ଉପଜାତୀୟ ଛନ୍ଦ । ସେହି ପରି ବଂଶସ୍ଥ ଓ ଇନ୍ଦ୍ରବଂଶା ଛନ୍ଦର ମିଶ୍ରଣରେ ଦୋଧକ ସହ ରୋଧକର ମିଶ୍ରଣରେ ଦାରିକା ସହ ଉପଦାରିକା ଛନ୍ଦର ମିଶ୍ରଣରେ ଉପଜାତି ହେଇ ପରେ ।

ଉପଜାତି କରିବା ଅନୁଶାସନ ହେଲା ଯେଉଁ ଯେଉଁ ଛନ୍ଦର କେବଳ ପ୍ରଥମ ଅକ୍ଷରରେ ଲଘୁଗୁରୁ ବର୍ଣ୍ଣଭେଦ ଥିବ ଓ ଅବଶିଷ୍ଟ ସମସ୍ତ ବର୍ଣ୍ଣ ଓ କ୍ରମ ଏକା ଥିବ ସେ ଦୁଇ ଛନ୍ଦକୁ ନେଇ ଉପଜାତି ଗଢ଼ା ଯାଇ ପାରେ । ତେଣୁ ଉପଜାତୀୟ ଛନ୍ଦଷ୍ଟୟ କେବଳ ଅର୍ଦ୍ଧସମ ବା ବିଷମ ହେଇ ପାରିବେ ସମ ଛନ୍ଦ କଦାପି ହେଇ ପାରିବେ ନାହିଁ ।

ଅନ୍ୟତ୍ର ଚର୍ଚ୍ଚା ହେବ **-** ଏତଭିନ୍ନ କିଛି ଛନ୍ଦ ଅଛି ଯେଉଁଥିରେ **୪ରୁ ଅଧିକ ପାଦ** ଥାଏ । ଏ ଗୁଡ଼ିକର ସଙ୍ଖ୍ୟା ଅଳ୍ପ ଓ ସେତେ ବହୁଳ ଭାବେ ଲେଖା ହୁଏ ନାହିଁ ।

କେଉଁ ସ୍ୱରବର୍ଣ୍ଣଗୁଡ଼ିକ **ଗୁରୁ** ବର୍ଣ୍ଣ ଓ କେଉଁ ସ୍ୱର ବର୍ଣ୍ଣଗୁଡ଼ିକ **ଲଘୁ** ବର୍ଣ୍ଣ ? ଉତ୍ତର:

ସାନୁସ୍ୱାର ବିସର୍ଗାନ୍ତ      ଦୀର୍ଘ ସଂଯୁକ୍ତପୂର୍ବକ

ହଳାଗ୍ରେ ଗୁରୁ ପାଦାନ୍ତେ ଲଘୁ ଅନ୍ୟାନ୍ୟ ସର୍ବକ ॥

*[1] ଅନୁସ୍ଵାରଯୁକ୍ତ [2] ବିସର୍ଗଯୁକ୍ତ [3] ବ୍ୟାକରଣର ଦୀର୍ଘ ସ୍ଵର (ଆ ଈ ଊ ଋ ଏ ଐ ଓ ଔ - ଏହି 8ଟି) [4] ଯୁକ୍ତାକ୍ଷରର ପୂର୍ବସ୍ଥ [5] ହଳ ଚିହ୍ନର ପୂର୍ବସ୍ଥ ଓ [6] ପାଦର ଶେଷସ୍ଥ ସ୍ଵର ଗୁରୁ ବର୍ଣ୍ଣର ମାନ୍ୟତାପ୍ରାପ୍ତ (ଅର୍ଥାତ୍ ଏଗୁଡ଼ିକ ଉଚ୍ଚାରିତ ହେବାକୁ ଦୁଇ ମାତ୍ରା ବା ଦୁଇ ଏକକ ସମୟ ନିଅନ୍ତି ।) ଅନ୍ୟ ସମସ୍ତ ସ୍ଵର ଲଘୁ ବର୍ଣ୍ଣ ଅର୍ଥାତ୍ ଏକମାତ୍ରିକ । ଅଥବା*

ଅନୁସ୍ଵାରୀ ବିସର୍ଗୀ ଓ ହଳନ୍ତୀ ପୁରତଃ ଗୁରୁ ।
ଦୀର୍ଘ ସଂଯୁକ୍ତପୂର୍ବସ୍ଥ ବିକଳ୍ପେ ଚରଣାନ୍ତକ ॥

ମୂଳ ସଂସ୍କୃତ ସୂତ୍ର:-

**सानुस्वारश्च दीर्घश्च विसर्गी च गुरुर्भवेत् ।**
**वर्णः संयुक्तपूर्वश्च तथा पादान्तगोऽपि वा ॥**

ସାନୁସ୍ଵାରଶ୍ଚ ଦୀର୍ଘଶ୍ଚ ବିସର୍ଗୀ ଚ ଗୁରୁର୍ଭବେତ୍ ।
ବର୍ଣଃ ସଂଯୁକ୍ତପୂର୍ବଶ୍ଚ ତଥା ପାଦାନ୍ତଗୋଽପି ବା ॥

**ବ୍ୟଞ୍ଜନ** ବର୍ଣ୍ଣଚୟ ନିଜେ ନିଜେ ଉଚ୍ଚାରିତ ହେଇ ପାରନ୍ତି ନାହିଁ କି ସମୟ ନିଅନ୍ତି ନାହିଁ । ସେଗୁଡ଼ିକ ସ୍ଵରବର୍ଣ୍ଣର ସହାୟତାରେ ଓ ତାହାରି ପ୍ରବାହରେ ଉଚ୍ଚାରିତ ହେଇ ଯାନ୍ତି । ତେଣୁ ବ୍ୟଞ୍ଜନ ବର୍ଣ୍ଣର ମାତ୍ରା ଶୂନ୍ୟ ।

ଛନ୍ଦଃପାଠ ବେଳେ ଶ୍ଵାସ ପାଇଁ ମଧ୍ୟେ ମଧ୍ୟେ ନେବାକୁ ପଡୁଥିବା ବିରତିର ନାମ **ଯତି** । ଯାହାର ଉଚ୍ଚାରଣରେ ଅଧିକ ସମୟ ଦେବାକୁ ବ୍ୟାକରଣର ନିର୍ଦ୍ଦେଶ ଅଛି ଓ ବୋଲିଲା ବେଳେ ଯେଉଁ ଯେଉଁ ବର୍ଣ୍ଣକୁ ଅଧିକ ସମୟ ଦେବାକୁ ମନୁଷ୍ୟର ସ୍ଵରତନ୍ତ୍ରୀ ବାଧ କରେ ଛନ୍ଦଃଶାସ୍ତ୍ର ତାକୁ ଗୁରୁବର୍ଣ୍ଣର ମାନ୍ୟତା ଦିଏ ମାତ୍ର କିଛି ଲଦେ ନାହିଁ ।

ବାର୍ଣ୍ଣିକ ସମଛନ୍ଦଗୁଡ଼ିକର ପାଦରେ ଅକ୍ଷର ସଙ୍ଖ୍ୟାନୁଯାୟୀ ଶ୍ରେଣୀନାମ ହେଲା ଉକ୍ତା (ପ୍ରତି ପାଦରେ ଅକ୍ଷର ୧) ଅତ୍ୟୁକ୍ତା (ପାଦେ ଅକ୍ଷର ୨) ମଧ୍ୟା (ଅକ୍ଷର ୩) । ସେହି ପରି ପ୍ରତିଷ୍ଠା-୪ ସୁପ୍ରତିଷ୍ଠା-୫ ଗାୟତ୍ରୀ-୬ ଉଷ୍ଣକ୍-୭ ଅନୁଷ୍ଟୁପ୍/ଅନୁଷ୍ଟୁଭ୍-୮ ବୃହତୀ-୯ ପଙ୍କ୍ତି-୧୦ ତ୍ରିଷ୍ଟୁପ୍-୧୧ ଜଗତୀ-୧୨ ଅତିଜଗତୀ-୧୩ ଶକ୍ଵରୀ-୧୪ ଅତିଶକ୍ଵରୀ-୧୫ ଅଷ୍ଟି-୧୬ ଅତ୍ୟଷ୍ଟି-୧୭ ଧୃତି-୧୮ ବି(ଅତି)ଧୃତି-୧୯ କୃତି-୨୦ ପ୍ରକୃତି-୨୧ ଆକୃତି-୨୨ ବିକୃତି-୨୩ ସଂକୃତି-୨୪ ଅତିକୃତି-୨୫ ଓ ଉତ୍କୃତି ୨୬ ଅକ୍ଷରବିଶିଷ୍ଟ ଛନ୍ଦର ନାମ । ୨୬ରୁ ଅଧିକ ଅକ୍ଷରର ସମସ୍ତ ଛନ୍ଦକୁ ଦଣ୍ଡକ ଶ୍ରେଣୀରେ ନିଆ ଯାଏ ।

ସେହି ପରି ପ୍ରତିପାଦରେ ମାତ୍ରାସଙ୍ଖ୍ୟାର ଆଧାରରେ ମାତ୍ରିକ ସମଛନ୍ଦଚୟର ବି ନାମ ରଖା ଯାଇଛି । ୭ ଓ ତହିଁରୁ ଅଧିକ ମାତ୍ରାର ପାଦବିଶିଷ୍ଟ ମାତ୍ରିକ ଛନ୍ଦଗୁଡ଼ିକର ନାମ ହେଲା - ଲୌକିକ-୭ ବାସବ-୮ ଆଙ୍କ-୯ ଦୈଶିକ-୧୦ ରୌଦ୍ର-୧୧ ଆଦିତ୍ୟ-୧୨ ଭାଗବତ-୧୩ ମାନବ-୧୪ ତୈଥିକ-୧୫ ସଂସ୍କାରୀ-

୧୬ ମହାସଂସ୍କାରୀ-୧୭ ପୌରାଣିକ-୧୮ ମହାପୌରାଣିକ-୧୯ ମହାଦୈଶିକ-୨୦ ତ୍ରୈଲୋକ-୨୧ ମହାରୌଦ୍ର-୨୨ ରୌଦ୍ରାର୍କ-୨୩ ଅବତାରୀ-୨୪ ମହାବତାରୀ-୨୫ ମହାଭାଗବତ-୨୬ ନାକ୍ଷତ୍ରିକ-୨୭ ଯୌଗିକ-୨୮ ମହାଯୌଗିକ-୨୯ ମହାତୈଥିକ-୩୦ ଅଶ୍ୱାବତାରୀ-୩୧ ଲାକ୍ଷଣିକ-୩୨ ମାତ୍ରା । ୩୨ରୁ ଅଧିକ ମାତ୍ରାର ସମସ୍ତ ମାତ୍ରିକ ସମଛନ୍ଦ ଦଣ୍ଡକ । ୭ରୁ ଊଣା ମାତ୍ରାର ଛନ୍ଦ ଲେଖା ଦେଖିବାକୁ ମିଳୁ ନାହିଁ କି ସେଗୁଡିକର ନାମ ଥିଲେ ମିଳୁ ନାହିଁ ।



**7978 680 712**

**ଛନ୍ଦଃଶିକ୍ଷା ପାଇଁ ଆଗ୍ରହୀଗଣ ନିମ୍ନସ୍ଥ ଦୁଇଟି link ରେ click କରନ୍ତୁ !**

**Links for More Reading to Learn Indian Ptosody Are:**

**(1)**

**https://archive.org/details/20240910_20240910_0703**

**(2)**

**https://archive.org/details/20240415_20240415_0631**

